ଓଡ଼ିଶା ଶିକ୍ଷା ବର୍ଗୀୟ ଡାଇରେକ୍ଟରଙ୍କ ଦ୍ୱାରା ୩୦।୬।୫୪ ତାରିଖର
୩ ନମ୍ବର ନୋଟିସରେ ଅଷ୍ଟମ ଶ୍ରେଣୀର ସାହିତ୍ୟ (Text) ରୂପେ ନିର୍ବାଚିତ ।

# ନୂତନ ସାହିତ୍ୟ ସଂଗ୍ରହ

( ଅଷ୍ଟମ ଶ୍ରେଣୀ ନିମନ୍ତେ )


ସମ୍ପାଦକ

ଅଧ୍ୟାପକ ଜୟକୃଷ୍ଣ ମିଶ୍ର, ଏମ୍. ଏ.

ଅଧ୍ୟାପକ ଶ୍ରୀଧର ଦାସ, ଏମ୍. ଏ. ଡି. ଇଡ.



ପରିମାର୍ଜିତ ସଂସ୍କରଣ

୧୯୫୪

ପ୍ରକାଶକ

ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ

ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବ୍ରହ୍ମପୁର   କଟକ : ସମ୍ବଲପୁର

ମୂଲ୍ୟ ଏକ ଟଙ୍କା ଦୁଇ ଅଣା   ( ଅତିରିକ୍ତ ନାହିଁ )

## କୃତଜ୍ଞତା ସ୍ୱୀକାର

ଏହି ଗ୍ରନ୍ଥ-ସନ୍ନିବଷ୍ଟ ଗଦ୍ୟପଦ୍ୟାବଳୀର ସ୍ୱତ୍ୱାଧିକାରୀଗଣ ଅନୁମତି ପ୍ରଦାନ କରିଥିବାରୁ ଆମ୍ଭେମାନେ କୃତଜ୍ଞତା ଜ୍ଞାପନ କରୁଅଛୁଁ ।

—ମୁଖ୍ୟ ସମ୍ପାଦକ

# ସୂଚୀ

ବିଷୟ ପୃଷ୍ଠା

ବିଷୟ ପୃଷ୍ଠା

# ନୂତନ ସାହିତ୍ୟ ସଂଗ୍ରହ

## ବାପୁ,— ତବ ପଦେ ବିଶ୍ୱ ପଡ଼ିଛି ନଇଁ

ବିଶ୍ୱପତିର ନିର୍ଦ୍ଦେଶେ ଅବତରି,
ଆସିଲ ବାପୁ ହେ, ଦିବ୍ୟ ଶରୀର ଧରି;
ସଂସାର-ହିତେ ଧାଇଁଲ ଯାତନା ସହି;
ବାପୁ, ତବ ପଦେ ବିଶ୍ୱ ପଡ଼ିଛି ନଇଁ । ୧ ।
ସନ୍ଧାନ କଲ ସରଳ ସତ୍ୟ ପଥ,
ଚଲାଇଲ ତୁମ ଦୁର୍ବାର ମନୋରଥ;
କାନେ କାନେ ଦେଲ ମୁକ୍ତି-ବାରତା କହି;
ବାପୁ, ତବ ପଦେ ବିଶ୍ୱ ପଡ଼ିଛି ନଇଁ । ୨ ।
ମନ୍ତ୍ରେ ରଟିଲ, "ନୁହେଁ କେହି ବଡ଼ ସାନ,
ଉଚ୍ଚ ବା ନୀଚ; ତୁଚ୍ଛ ଏ ଅଭିମାନ ।"
ଉଡ଼ିଲା ସାମ୍ୟ-ଶାନ୍ତି-ପତାକା ତହିଁ;
ବାପୁ, ତବ ପଦେ ବିଶ୍ୱ ପଡ଼ିଛି ନଇଁ । ୩ ।
ତୁମର ଆଲୋକ ଖେଳିଯାଉ ହୃଦେ ହୃଦେ,
ତୁମ ଶୁଭାଶିଷେ ଜାଗୁ ହେ ମାନବ ହୃଦେ;
ଯୁଗେ ଯୁଗେ ତୁମ ବାରତା ନେଉ ସେ ବହି;
ବାପୁ, ତବ ପଦେ ବିଶ୍ୱ ପଡ଼ିଛି ନଇଁ । ୪ ।

ସରଳ ଜୀବନେ ଶୁଦ୍ଧ ସାଧନେ ଲଭି
ସଂସାର ହେଉ ସତ୍ୟର ଅନୁରାଗୀ ।



ଗୁଞ୍ଜୁ ଅଗେ ଅଗେ ମନ୍ଦ୍ର ଉଦ୍‌ଗମ ଲକ୍ଷଣ ଜାଗି ।
ବାପୁ, ତବ ପଦେ ବିଶ୍ୱ ପଡ଼ିବ ନଇଁ । ୫ ।

### ପ୍ରଶ୍ନ

୧ । ଗାନ୍ଧିଜୀଙ୍କ ପଦତଳେ ବିଶ୍ୱ କାହିଁକି ନଇଁପଡ଼ିବ ବୋଲି ଏ କବିତାରେ ବର୍ଣ୍ଣିତ ହୋଇଅଛି ?

୨ । ତୃତୀୟ ପଦଟିର ସରଳାର୍ଥ ପ୍ରକାଶ କର ।

୩ । ନିର୍ଦ୍ଦେଶ, ଦୁର୍ବାର, ଦେହ, ହୁଙ୍କାର, ବିଶ୍ୱପତି—ଏ ଶବ୍ଦଗୁଡ଼ିକୁ ବାକ୍ୟରେ ବ୍ୟବହାର କର ।

# ଗୋପବନ୍ଧୁ ଓ ସତ୍ୟବାଦୀ ବିଦ୍ୟାଳୟ *

ଜନନାୟକ ଓ ଦେଶସେବକ ପଣ୍ଡିତ ଗୋପବନ୍ଧୁ ଉତ୍କଳର ଘରେ ଘରେ ପରିଚିତ । ତାଙ୍କର ବହୁମୁଖୀ ପ୍ରତିଭା ବିଭିନ୍ନ କ୍ଷେତ୍ରରେ ପ୍ରକଟିତ ହୋଇଥିଲା । ସେ ସତ୍ୟବାଦୀଠାରେ ଗୋଟିଏ ଆଦର୍ଶ ବିଦ୍ୟାଳୟ ପ୍ରତିଷ୍ଠା କରି ଉପଯୁକ୍ତ ନାଗରିକ ଗଢ଼ିବାପାଇଁ ପ୍ରୟାସ କରିଥିଲେ । ତାଙ୍କର ଆଦର୍ଶ ଓ ନୀତି ସମ୍ବନ୍ଧରେ କେତେକ ବିବରଣ ନିମ୍ନରେ ପ୍ରଦତ୍ତ ହେଉଅଛି ।

ଗୋପବନ୍ଧୁ ସ୍ୱଜୀବନରେ ନିର୍ଭୀକ, ସ୍ପଷ୍ଟବାଦୀ ଓ ନୀତିପରାୟଣ ଥିଲେ । ତାଙ୍କର ଗଭୀର ଦେଶପ୍ରୀତିର ପରିଚୟ ମଧ୍ୟ ସେହି ସମୟରୁ ମିଳିଥିଲା । କଲିକତାରେ ଓକିଲାତି ପଢୁଥିବା ସମୟରେ ସେ ସ୍ୱଦେଶୀ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେତେବେଳକୁ ଓଡ଼ିଶା ଖଣ୍ଡ-ବିଖଣ୍ଡିତ ହୋଇ ବିଭିନ୍ନ ପ୍ରଦେଶରେ ରହିଥାଏ । ଓଡ଼ିଆମାନେ ଦାରିଦ୍ର୍ୟ ଓ ଅଜ୍ଞାନାନ୍ଧକାରରେ ନିମଗ୍ନ ଥାଆନ୍ତି । ସ୍ୱଦେଶୀ ଆନ୍ଦୋଳନରେ ଅନ୍ୟାନ୍ୟ ପ୍ରଦେଶର ଯୁବକମାନଙ୍କ ଉତ୍ସାହ ଓ କର୍ମପ୍ରବଣତା ସହିତ ଓଡ଼ିଆ ଯୁବକଙ୍କର ନିର୍ଜୀବ ଭାବ ତୁଳନା କରି ସେ ମର୍ମନ୍ତୁଦ ବ୍ୟଥା ଅନୁଭବ କରିଥିଲେ । ତେଣୁ ଦେଶରେ ଉପଯୁକ୍ତ ନାଗରିକ ଗଢ଼ିବା ପାଇଁ ଗୋଟିଏ ଆଦର୍ଶ ବିଦ୍ୟାଳୟ ପ୍ରତିଷ୍ଠା କରିବାର କଳ୍ପନା ତାଙ୍କ ହୃଦୟରେ ଜାଗରିତ ହେଲା । କୁଳବୃଦ୍ଧ ମଧୁସୂଦନ ଓ ଭକ୍ତକବି ମଧୁସୂଦନଙ୍କଠାରୁ ପ୍ରେରଣା ଲାଭ କରି ସେ ଏହି ବିଦ୍ୟାଳୟଟି ସତ୍ୟବାଦୀର ବକୁଳବନରେ ସ୍ଥାପନ କରିବାକୁ ସ୍ଥିର କଲେ । ଏହି ଉଦ୍ଦେଶ୍ୟରେ ସେ ଶ୍ରୀରାମଚନ୍ଦ୍ରପୁରର ମଧ୍ୟଭର୍ଣ୍ଣାକୁଲର ବିଦ୍ୟାଳୟକୁ ଏଠାକୁ ଉଠାଇ ଆଣିଥିଲେ ଏବଂ ଏହାକୁ ମାଇନର ସ୍କୁଲରେ ପରିଣତ କରି ଗୋଟିଏ ପ୍ରକାଣ୍ଡ

---

* ଲେଖକଙ୍କର 'ସତ୍ୟବାଦୀରେ ସାତ ବର୍ଷ' ନାମକ ପୁସ୍ତକରୁ ଆହୃତ

ଗୃହଘରେ କାର୍ଯ୍ୟ ଆରମ୍ଭ କରିଥିଲେ । ପରେ ଏହା ଉଚ୍ଚଇଂରାଜୀ ବିଦ୍ୟାଳୟରେ ପରିଣତ ହୋଇଥିଲା ।

ସ୍କୁଲ ପ୍ରତିଷ୍ଠା କରିବାରେ ପଣ୍ଡିତ ନୀଳକଣ୍ଠ ଗୋପବନ୍ଧୁଙ୍କର ପ୍ରଥମ ଓ ପ୍ରଧାନ ସହଚର ଥିଲେ । ସେତେବେଳେ ନୀଳକଣ୍ଠ କେତେକ ସାମାଜିକ କୁସଂସ୍କାର ଦୂର କରିବାକୁ ଆନ୍ଦୋଳନ ଚଳାଇଥାନ୍ତି । ଫଳରେ ବହୁ ରକ୍ଷଣଶୀଳ ବ୍ୟକ୍ତି ତାଙ୍କର ବିରୋଧାଚରଣ କରିବାକୁ ଚେଷ୍ଟା କରି ସ୍କୁଲଘରଟିକୁ ପୋଡ଼ି-ଦେଲେ । ଏହି ସମୟରେ ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀରେ ନ ଥାନ୍ତି । ସେ ଏହି ଦୁଃସମ୍ବାଦ ପାଇ ସତ୍ୟବାଦୀକୁ ଆସିଲେ ଏବଂ ବନ୍ଧୁ ଓ ଛାତ୍ରମାନଙ୍କୁ ହସୋତ୍‌ଫୁଲ୍ଲ ମୁଖରେ କହିଲେ, "ବୀରର ପଛଘୁଞ୍ଚା ନାହିଁ; ସଦୁଦ୍ଦେଶ୍ୟର ବିଳୟ ନାହିଁ । ଭଗବାନଙ୍କର ଇଚ୍ଛା, ଏ ଅନୁଷ୍ଠାନ ପାଇଁ ପକ୍କା ଘର ହେବ ।"



[ ପଣ୍ଡିତ ଗୋପବନ୍ଧୁ ]

ଗୋପବନ୍ଧୁଙ୍କର ବିରାଟ ବ୍ୟକ୍ତିତ୍ୱ ସମସ୍ତଙ୍କୁ ଅଣାକୃଷ୍ଟ କରି ଦେଲା । ବିଲାତର ଇଟନ୍, ହାରୋ, ବୋଲପୁରର ଶାନ୍ତିନିକେତନ କମ୍ବା ପୁନାର ଫର୍ଗୁସନ୍

କଲେଜ ପରି ଗୋଟିଏ ଆଦର୍ଶ ବିଦ୍ୟାଳୟ ଗଠନ କରିବା ଯେ ଗୋପବନ୍ଧୁଙ୍କର ଲକ୍ଷ୍ୟ ଥିଲା, ଏହା ସମସ୍ତଙ୍କର ହୃଦ୍‌ବୋଧ ହେଲା । ଗୋପବନ୍ଧୁ ବିଦ୍ୟାଳୟର ସମ୍ପାଦକତ୍ୱ ଗ୍ରହଣ କରି ଅର୍ଥସଂଗ୍ରହ ନିମନ୍ତେ ଉଦ୍ୟମ କଲେ । ତାଙ୍କର ମହତ୍ ଉଦ୍ଦେଶ୍ୟ ଦେଶର ନେତା, ରାଜାପ୍ରଜା, ଧନଦରିଦ୍ର, ସମସ୍ତଙ୍କର ସହାନୁଭୂତି ଆକର୍ଷଣ କଲା ଓ ଅଳ୍ପ ସମୟମଧ୍ୟରେ ଗୋଟିଏ ଚଳନୋପଯୋଗୀ ବିଦ୍ୟାଳୟଗୃହ ନିର୍ମିତ ହେଲା ।

ପଣ୍ଡିତ ଗୋପବନ୍ଧୁ ସର୍ବଦା ଦେଶର ନାନାବିଧ କାର୍ଯ୍ୟରେ ବ୍ୟାପୃତ ରହୁଥିଲେ ଏବଂ ସ୍କୁଲପାଇଁ ଚାନ୍ଦା ଆଦାୟ ଉଦ୍ଦେଶ୍ୟରେ ନାନା ସ୍ଥାନରେ ଭ୍ରମଣ କରୁଥିଲେ । ତେଣୁ ସେ ନିଜେ ସ୍କୁଲରେ ବେଶୀ ସମୟ ରହିପାରୁ ନ ଥିଲେ । ସେଠାରେ ତାଙ୍କ ପାଇଁ ସ୍ୱତନ୍ତ୍ର କୋଠରିଟିଏ ମଧ୍ୟ ନ ଥିଲା । ସେ ସତ୍ୟବାଦୀରେ ଅବସ୍ଥାନ କରୁଥିବା ବେଳେ ସାକ୍ଷିଗୋପାଳଙ୍କ କଚେରି ଘରର ଗୋଟିଏ ଅଂଶରେ ରହୁଥିଲେ । ଏହି କାରଣରୁ ସ୍କୁଲର ଛାତ୍ରମାନେ ତାଙ୍କର ନିକଟ ସମ୍ପର୍କରେ ଆସିପାରୁ ନ ଥିଲେ । କିନ୍ତୁ କାଳପରେ ଛାତ୍ରାବାସନିର୍ମାଣ ସଙ୍ଗେ ସଙ୍ଗେ ଗୋପବନ୍ଧୁଙ୍କ ନିମନ୍ତେ କୁଟୀରତୁଲ୍ୟ ଗୋଟିଏ ଗୃହ ନିର୍ମିତ ହୋଇଥିଲା । ଗୋପବନ୍ଧୁ ସତ୍ୟବାଦୀରେ ରହିଲାବେଳେ ସେହି ଗୃହରେ ବହୁ ନେତାଙ୍କର ସମାଗମ ହେଉଥିଲା । ବିଦ୍ୟାଳୟର ବିବିଧ ଉନ୍ନତିମୂଳକ କର୍ମପନ୍ଥା ଏବଂ ସାହିତ୍ୟ, ସମାଜସଂସ୍କାର ଓ ଦେଶସେବା ବିଷୟ ମଧ୍ୟ ସେଠାରେ ଆଲୋଚିତ ହୁଏ ।

ଗୋପବନ୍ଧୁଙ୍କର ପରାମର୍ଶ ଓ ନୀଳକଣ୍ଠଙ୍କର ସୁଚିନ୍ତିତ କର୍ମ-ଯୋଜନା ଅନୁସରଣ କରି ବିଦ୍ୟାଳୟର କାର୍ଯ୍ୟ ଚାଲିଲା । ପଣ୍ଡିତ

ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର, ଅଗ୍ରଣୀ ହରିହର ଦାସ ପ୍ରଭୃତି ବିଶିଷ୍ଟ କର୍ମୀ ମଧ୍ୟ ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ବିଦ୍ୟାଳୟରେ ଶିକ୍ଷକରୂପେ ଯୋଗଦାନ କଲେ । ଫଳରେ ବିଦ୍ୟାଳୟଟି ଉତ୍ତରୋତ୍ତର ଉନ୍ନତି କରିବାକୁ ଲାଗିଲା । ନୈତିକତା, ଆତ୍ମାନୁବର୍ତ୍ତିତା ଓ ସମାଜସେବା ବିଦ୍ୟାଳୟର ପ୍ରଧାନ ଆଦର୍ଶରୂପେ ଗୃହୀତ ହେଲା । ସାଧାରଣ ପାଠ୍ୟ ବ୍ୟତୀତ ବ୍ୟାୟାମ, ହସ୍ତକର୍ମ, କୃଷି ଓ ସଙ୍ଗୀତ ମଧ୍ୟ ଶିକ୍ଷାର ଅଙ୍ଗୀଭୂତ ହେଲା । ତେଣୁ ଉତ୍କଳର ବିଭିନ୍ନ ଅଞ୍ଚଳରୁ ଧନୀ-ଦରିଦ୍ର, ରାଜା-ମହାରାଜା ପ୍ରଭୃତି ପ୍ରତ୍ୟେକ ଶ୍ରେଣୀର ଲୋକଙ୍କ ସନ୍ତାନମାନେ ବହୁ ସଂଖ୍ୟାରେ ଏହି ବିଦ୍ୟାଳୟରେ ପ୍ରବେଶ କଲେ । ଯେଉଁସବୁ ସମାଜସଂସ୍କାର ପାଇଁ ପଣ୍ଡିତ ନୀଳକଣ୍ଠଙ୍କୁ ବିବିଧ ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡ଼ିଥିଲା, କ୍ରମେ ଛାତ୍ରାବାସରେ ସେସବୁର ପ୍ରଚଳନ ସହଜ ହେଲା । ଛାତ୍ରମାନେ ଜାତିଧର୍ମନିର୍ବିଶେଷରେ ଏକ ପଙ୍‌କ୍ତିରେ ବସି ଭୋଜନ କରିବା ଏତେ ସାଧାରଣ ହୋଇପଡ଼ିଲା ଯେ, ରକ୍ଷଣଶୀଳ ଅଭିଭାବକମାନେ ଏ କାର୍ଯ୍ୟକୁ ପ୍ରତିରୋଧ କରିବା ପରିବର୍ତ୍ତିରେ ସମର୍ଥନ କଲେ ଏବଂ ଗଣେଶପୂଜା ଓ ସରସ୍ୱତୀପୂଜା ପ୍ରଭୃତି ଉତ୍ସବରେ ଆମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ଛାତ୍ରମାନଙ୍କ ସଙ୍ଗେ ଏକ ପଙ୍‌କ୍ତିରେ ଭୋଜନ କରିବାକୁ ଲଜ୍ଜାମାତ୍ର କୁଣ୍ଠା ବୋଧ କଲେ ନାହିଁ ।

ଗୋପବନ୍ଧୁ ଅନେକ ସମୟରେ ଅପ୍ରତ୍ୟାଶିତଭାବରେ ସ୍କୁଲର ଯେକୌଣସି ଶ୍ରେଣୀରେ ପ୍ରବେଶ କରି ଅଧ୍ୟାପନା କରନ୍ତି । ତାଙ୍କର ଶିକ୍ଷାଦାନ ପ୍ରଣାଳୀରେ ବିଶେଷତ୍ୱ ଥିଲା । ସେ ସର୍ବଦା ପଠିତ ବିଷୟକୁ ନିଜ ଭାଷାରେ ପ୍ରକାଶ କରିବା ପାଇଁ ଛାତ୍ରମାନଙ୍କୁ ଉତ୍ସାହିତ କରୁଥିଲେ । ମୌଳିକ ରଚନା ଶିକ୍ଷା ଦେବାରେ ତାଙ୍କର

ନୈପୁଣ୍ୟ ଥିଲା । ଯେତେ କଠିନ ବିଷୟ ହେଲେହେଁ ସେ ଏପରି ଭାବପ୍ରବଣ ହୋଇ ସରଳ ଭାଷାରେ ବୁଝାଇ ଦେଉଥିଲେ ଯେ, ଛାତ୍ରମାନେ ତାହା ଅକ୍ଲେଶରେ ହୃଦୟଙ୍ଗମ କରି ପାରୁଥିଲେ ।

ଗୋପବନ୍ଧୁ ଛାତ୍ରମାନଙ୍କୁ ନିଜର ସନ୍ତାନତୁଲ୍ୟ ସ୍ନେହ କରୁଥିଲେ । ସେ ସ୍କୁଲରେ ଅବସ୍ଥାନ କଲାବେଳେ ପ୍ରତ୍ୟେକ ଛାତ୍ରର ଅଭାବ ଅସୁବିଧା ନିଜେ ବୁଝିବା ପାଇଁ ଚେଷ୍ଟା କରୁଥିଲେ ଏବଂ ଦୁଃସ୍ଥ ଛାତ୍ରମାନଙ୍କୁ ସ୍ୱାବଲମ୍ବୀ ହେବାରେ ସାହାଯ୍ୟ କରୁଥିଲେ । ଛାତ୍ରମାନେ ନିଜେ ନିଜେ ଗଣତନ୍ତ୍ର ନୀତିରେ ଛାତ୍ରାବାସକୁ ପରିଚାଳନା କରିବା ପାଇଁ ସେ ବ୍ୟବସ୍ଥା କରିଥିଲେ । ସେମାନଙ୍କ ମତ ପ୍ରତି ସମ୍ମାନ ଦେଖାଇବା ତାଙ୍କର ନୀତି ଥିଲା । କୌଣସି କାରଣରୁ ଛାତ୍ର ଓ ଶିକ୍ଷକଙ୍କ ମଧ୍ୟରେ ମତଭେଦ ଘଟିଲେ ସେ ନିରପେକ୍ଷଭାବରେ ତାହାର ସମାଧାନ କରିଦେଉଥିଲେ । ତାଙ୍କର କୋମଳ ବ୍ୟବହାର ଓ ଅମ୍ଳାନ ବଦନର ସରଳ ସତ୍ୟକଥା ସମସ୍ତଙ୍କୁ ଚମତ୍କୃତ କରି ଦେଉଥିଲା । ଫଳରେ ଘଟଣାକ୍ରମେ କୌଣସି ଶିକ୍ଷକଙ୍କ ବିରୁଦ୍ଧରେ ନିନ୍ଦିତ ହେଲେ ସୁଦ୍ଧା ଉକ୍ତ ଶିକ୍ଷକ କ୍ଷୁଣ୍ଣ ହେଉ ନ ଥିଲେ ।

ଗୋପବନ୍ଧୁଙ୍କର ଅନନ୍ୟସାଧାରଣ ସାହିତ୍ୟସାଧନା ସ୍କୁଲର ଛାତ୍ରମାନଙ୍କୁ ଉଦ୍‌ବୁଦ୍ଧ କରୁଥିଲା । ସେ ଲେଖିବା ବେଳେ ଏକାଗ୍ର ଚିତ୍ତରେ ଦୀର୍ଘକାଳ ନିଶ୍ଚଳ ଆସନରେ ବସି ରହୁଥିଲେ । ଅନେକ ସମୟରେ ସେ ଗୋଟିଏ ଗୋଟିଏ ସ୍ତବ ବା କବିତା ମୁହେଁ ମୁହେଁ ଗାଇ ଯାଉଥିଲେ ଏବଂ ତାଙ୍କର ଗୁଣମୁଗ୍ଧ ସହକର୍ମୀମାନେ ତାହା ଲେଖି ରଖୁଥିଲେ । ଏହି ରଚନାଗୁଡ଼ିକ ପରେ ଶ୍ରେଣୀମଧ୍ୟରେ ଆଲୋଚିତ ହେଉଥିଲା ।

ତାହାଙ୍କ ନିର୍ଦ୍ଦେଶରେ ଅନ୍ତେବାସୀ ଶିକ୍ଷକ ଏବଂ ଛାତ୍ରଗଣ ସକାଳେ ଓ ସନ୍ଧ୍ୟାରେ ଉପାସନା କରୁଥିଲେ । ଏହି ଉପାସନା କୌଣସି ନିର୍ଦ୍ଦିଷ୍ଟ ଧର୍ମପଦ୍ଧତିକୁ ଅନୁସରଣ କରୁ ନ ଥିଲା । ପୂଣ୍ୟାତ୍ମା ଗୋପବନ୍ଧୁ ଅନ୍ତର ନିଷ୍ଠା, ପୂଜା, ଉପାସନା ଆଦିକୁ ଅତ୍ୟନ୍ତ ଶ୍ରଦ୍ଧାସହକାରେ ପାଳନ କରୁଥିଲେ । ଓଡ଼ିଆ ଭାଗବତର ଅଧିକାଂଶ ତାଙ୍କର ମୁଖସ୍ଥ ଥିଲା । ସେ ପ୍ରତ୍ୟୁଷରୁ ଚନ୍ଦନପୋଖରୀରେ ସ୍ନାନ କରି, ମଠା ପିନ୍ଧି, କଠୋଉ ମାଡ଼ି ସାକ୍ଷିଗୋପାଳଙ୍କ ମନ୍ଦିରକୁ ଯାଉଥିଲେ । ଦେବଦର୍ଶନ ପରେ ସେ ଛାତ୍ରାବାସକୁ ଫେରି ଆସୁଥିଲେ ଓ କମ୍ବଳାସନରେ ବସି ଗୀତା ପାଠ କରୁଥିଲେ । ତତ୍ପରେ ତାଙ୍କର ଦୈନନ୍ଦିନ କାର୍ଯ୍ୟ ଆରମ୍ଭ ହେଉଥିଲା ।

ଆଳସ୍ୟରେ ମୂହୂର୍ତ୍ତେ ମାତ୍ରା ଅତିବାହିତ କରିବା ଗୋପବନ୍ଧୁଙ୍କ ଜୀବନରେ କଦାପି ପରିଦୃଷ୍ଟ ହେଉ ନ ଥିଲା । ଦେଶର ସର୍ବବିଧ କର୍ମଯୋଜନାରେ ସେ ଅଗ୍ରଣୀ ଥିଲେ । ପୀଡ଼ାଗ୍ରସ୍ତ ପ୍ରତିବେଶୀଙ୍କର ସେବା କରିବା ସଙ୍ଗେ ସଙ୍ଗେ ଦେଶର କୌଣସି ଅଞ୍ଚଳରେ ସଂକ୍ରାମକ ରୋଗ ବା ବନ୍ୟାଯୋଗୁ ଲୋକେ ବିପଦଗ୍ରସ୍ତ ହେଲେ ସେ ଛାତ୍ରମାନଙ୍କୁ ସ୍ୱେଚ୍ଛାସେବକରୂପେ ପ୍ରେରଣ କରି ସେମାନଙ୍କୁ ସାହାଯ୍ୟ କରୁଥିଲେ ।

ତତ୍କାଳୀନ ସରକାର ସତ୍ୟବାଦୀ ବିଦ୍ୟାଳୟପ୍ରତି ପ୍ରଥମେ କୌଣସି ସହାନୁଭୂତି ପ୍ରଦର୍ଶନ କରି ନ ଥିଲେ, ବରଂ ଏହାକୁ ସନ୍ଦେହପୂର୍ଣ୍ଣ ଦୃଷ୍ଟିରେ ଦେଖୁଥିଲେ । କିନ୍ତୁ ପଣ୍ଡିତ ଗୋପବନ୍ଧୁ ନିଜ ଲକ୍ଷ୍ୟସାଧନରେ ଅଚଳ ଅଟଳ ରହିଥିଲେ । ଏପରିକି ସରକାରଙ୍କ ସ୍ୱେଚ୍ଛାପ୍ରଣୋଦିତ ସାହାଯ୍ୟକୁ ମଧ୍ୟ ସେ ପ୍ରତ୍ୟାଖ୍ୟାନ କରିଥିଲେ । ସତ୍ୟବାଦୀର ବକୁଳବନରେ ଉନ୍ମୁକ୍ତ ଆକାଶତଳେ

ଶିକ୍ଷାଦାନ ପଦ୍ଧତିକୁ ପ୍ରଥମେ ସରକାର ଅନୁମୋଦନ କରି ନ ଥିଲେ । ତେଣୁ ଗୋପବନ୍ଧୁ ବ୍ୟବସ୍ଥାପକ ସଭାରେ ଏହି ବିଷୟ ଉତ୍ଥାପନ କରି ସରକାରଙ୍କ ସମର୍ଥନ ଲୋଡ଼ିଥିଲେ । ଫଳରେ ବିହାର-ଓଡ଼ିଶାର ଲାଟ ସାହେବ ଦୁଇ ଥର ଏହି ବିଦ୍ୟାଳୟକୁ ପରିଦର୍ଶନ କରିବାକୁ ଆସିଥିଲେ ଏବଂ ଏହାର ଆଦର୍ଶ ଓ କର୍ମ-ପନ୍ଥାରେ ବିଶେଷ ତୃପ୍ତ ହୋଇ ସକଳପ୍ରକାର ସରକାରୀ ବାଧା ଉଠାଇ ଦେଇଥିଲେ ।

ଗୋପବନ୍ଧୁ ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ଯୋଗୁଁ ଏହି ବିଦ୍ୟାଳୟଟିର ଅବସାନ ଘଟିଲା; କିନ୍ତୁ ତାହାର ପ୍ରଭାବ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ଏବେ ମଧ୍ୟ ଅନୁଭୂତ ହେଉଅଛି ।

## ପ୍ରଶ୍ନ

୧ । ସତ୍ୟବାଦୀରେ ଗୋଟିଏ ଆଦର୍ଶ ବିଦ୍ୟାଳୟ ସ୍ଥାପନ କରିବାରେ ଗୋପବନ୍ଧୁଙ୍କର କି ଉଦ୍ଦେଶ୍ୟ ଥିଲା ?

୨ । ସତ୍ୟବାଦୀ ବିଦ୍ୟାଳୟର କି କି ବିଶେଷତ୍ୱ ଥିଲା ?

୩ । ଏହି ପ୍ରବନ୍ଧରୁ ଗୋପବନ୍ଧୁଙ୍କର ଚରିତ୍ର କିପରି ଥିଲା ବୋଲି ଜଣାଯାଏ ?

୪ । ଜନସାଧାରଣ, ସ୍ୱଚ୍ଛବାଦୀ, ନୀତିପରିପୂର୍ଣ୍ଣ, ସ୍ୱେଚ୍ଛାପ୍ରଣୋଦିତ —ଏଗୁଡ଼ିକର ସମାସବାକ୍ୟ ଓ ସମାସର ନାମମାନ ଲେଖ ।

# ଅଲମ୍ପିକ୍ କ୍ରୀଡ଼ା ଓ ବିଶ୍ୱମୈତ୍ରୀ

ଗତ ୧୯୫୨ ମସିହା ଜୁଲାଇ ମାସରେ ଫିନ୍‌ଲଣ୍ଡ ଅନ୍ତର୍ଗତ ହେଲ୍‌ସାଙ୍କି ସହରରେ ଜଗତ୍‌ପ୍ରସିଦ୍ଧ ଅଲମ୍ପିକ୍ କ୍ରୀଡ଼ା-ପ୍ରତିଯୋଗିତା ହୋଇଯାଇଅଛି । ଏହି ପ୍ରତିଯୋଗିତାରେ ପୃଥିବୀର ପ୍ରାୟ ଅଧିକାଂଶ ଦେଶର ପ୍ରତିନିଧିମାନେ ଯୋଗ ଦେଇଥିଲେ । ଭାରତ ମଧ୍ୟ ଏହି ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିଥିଲା ।

ଅଲମ୍ପିକ୍ କ୍ରୀଡ଼ା-ପ୍ରତିଯୋଗିତାର ଇତିହାସ ଅତି ପ୍ରାଚୀନ ଓ ଏହାର ଉଦ୍ଦେଶ୍ୟ ଅତି ମହତ୍ । ଅଲମ୍ପିଆ ଗ୍ରୀସ୍ ଦେଶର ଗୋଟିଏ ଅତି ମନୋରମ ସ୍ଥାନ । ଏହାର ତିନି ଦିଗରେ ପର୍ବତମାଳା ପ୍ରାଚୀରରୂପେ ଅବସ୍ଥିତ । ଗ୍ରୀକ୍‌ମାନେ ବିଶ୍ୱାସ କରୁଥିଲେ ଯେ, ଏହି ପର୍ବତଗୁଡ଼ିକ ଦେବଦେବୀମାନଙ୍କର ଅଧିଷ୍ଠାନସ୍ଥଳୀ । ଏହି ଅଲମ୍ପିଆ ଶବ୍ଦରୁ ଅଲମ୍ପିକ ଶବ୍ଦର ଉତ୍ପତ୍ତି ।

ପ୍ରାଚୀନ ଯୁଗରେ ଗ୍ରୀସ୍‌ର ପର୍ନେସସ୍ ପର୍ବତର ପାଦଦେଶରେ ଡେଲ୍‌ଫି ନାମରେ ଗୋଟିଏ ନଗର ଥିଲା । ଏହି ପର୍ବତରେ ପ୍ରସିଦ୍ଧ ଗ୍ରୀକ୍‌ଦେବତା ଆପୋଲୋଙ୍କ ମନ୍ଦିର ଅବସ୍ଥିତ ଥିଲା । ଆପୋଲୋଙ୍କ ଭବିଷ୍ୟଦ୍‌ବାଣୀ ତାଙ୍କର ସେବିକାଙ୍କ ମୁଖରେ ପ୍ରକାଶ ପାଉଥିଲା ଏବଂ ଗ୍ରୀକ୍‌ମାନେ ଏହି ବାଣୀରେ ଅଟଳ ବିଶ୍ୱାସ ସ୍ଥାପନ କରୁଥିଲେ ।

ଖ୍ରୀଷ୍ଟ ଜନ୍ମର ୭୭୬ ବର୍ଷ ପୂର୍ବର କଥା । ସେତେବେଳେ ଗ୍ରୀସ୍ ଦେଶ ବହୁ କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହୋଇଥିଲା ଏବଂ ସେହି ରାଜ୍ୟଗୁଡ଼ିକର ରାଜାମାନେ ପରସ୍ପର ଯୁଦ୍ଧରେ ବ୍ୟାପୃତ ଥିଲେ । ଗ୍ରୀସ୍‌ରେ ଏପରି ଅନ୍ତର୍ବିବାଦ ଘଟିବାରୁ ବୈଦେଶିକ ଶତ୍ରୁମାନଙ୍କର ତାହା ଉପରେ ଲୋଲୁପ ଦୃଷ୍ଟି ପଡ଼ିଲା । ଏହି ସମୟରେ ଡେଲ୍‌ଫିର ଦୈବବାଣୀ ଅନୁସାରେ ଗ୍ରୀସ୍‌ରେ ପୁନଃଶାନ୍ତିପ୍ରତିଷ୍ଠା ଲାଗି ଅଲମ୍ପିକ୍ କ୍ରୀଡ଼ାର ସୃଷ୍ଟି ହେଲା । ଏହି କ୍ରୀଡ଼ା-ପ୍ରତିଯୋଗିତା ପ୍ରତି ଚାରି ବର୍ଷ ଅନ୍ତରରେ ଥରେ ଲେଖାଏଁ ଅନୁଷ୍ଠିତ ହେଉଥିଲା । ଦ୍ରୁତଗମନ, ମୁଷ୍ଟିଯୁଦ୍ଧ, କୁସ୍ତି, ରଥଚାଳନା ପ୍ରଭୃତିରେ ପ୍ରତିଯୋଗିତା କରାଯାଉଥିଲା । ପରବର୍ତ୍ତୀ କାଳରେ ଅନ୍ୟାନ୍ୟ ବହୁବିଧ କ୍ରୀଡ଼ାର ପ୍ରତିଯୋଗିତା ଏହାର ଅଙ୍ଗୀଭୂତ ହେଲା ।

•

ଯେଉଁ ବର୍ଷ ପ୍ରତିଯୋଗିତା ହୁଏ, ସେ ବର୍ଷର ପ୍ରାରମ୍ଭରୁ ଦୂତମାନେ ବିଭିନ୍ନ ଜନପଦରେ ବାଦ୍ୟ ବାଦନପୂର୍ବକ କ୍ରୀଡ଼ା ନିମିତ୍ତ ନିର୍ଦ୍ଧାରିତ ଦିବସ ଘୋଷଣା କରନ୍ତି ଏବଂ ସକଳପ୍ରକାର ଯୁଦ୍ଧବିଗ୍ରହ, କଳହ ଓ ଅଶାନ୍ତିରୁ କ୍ଷାନ୍ତ ହେବା ନିମିତ୍ତ ଆଦେଶ ଦିଅନ୍ତି । ଅଲମ୍ପିକ୍ ସମ୍ବତ୍ସରରେ କେହି ଯୁଦ୍ଧ ବା ଅଶାନ୍ତିର କାରଣ ହେଲେ ତାହାପାଇଁ ଦଣ୍ଡର ବ୍ୟବସ୍ଥା ଥିଲା । ବିଭିନ୍ନ ସ୍ଥାନର ପ୍ରତିଯୋଗୀମାନେ ଏହି ଘୋଷଣାପରେ କ୍ରୀଡ଼ା ନିମିତ୍ତ ପ୍ରସ୍ତୁତ ହୁଅନ୍ତି । କ୍ରୀଡ଼ାରେ ଯୋଗଦେବା ପୂର୍ବରୁ ସେମାନଙ୍କୁ ଶପଥ କରିବାକୁ ହେଉଥିଲା ଯେ, ସେମାନେ ପବିତ୍ରଭାବରେ ଜୀବନ ଯାପନ କରିଅଛନ୍ତି ଏବଂ କ୍ରୀଡ଼ାରେ ସେମାନେ କୌଣସି ଅସଦୁପାୟ ଅବଲମ୍ବନ କରିବେ ନାହିଁ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ,

ପ୍ରତିଯୋଗୀମାନଙ୍କର କ୍ରୀଡ଼ାସୁଲଭ ମନୋବୃତ୍ତି (sportsman spirit ) ଥିଲା ଏବଂ ସେମାନେ ହିଂସା, ଦ୍ୱେଷ ପ୍ରଭୃତି ନୀଚ ପ୍ରବୃତ୍ତିଠାରୁ ବହୁତ ଦୂରରେ ଥିଲେ । ସେମାନଙ୍କର ଶାରୀରିକ ଶକ୍ତି ଓ କୌଶଳ ସଙ୍ଗେ ନୈତିକ ବଳ ମଧ୍ୟ ଥିଲା । ଯେଉଁମାନେ ବିଭିନ୍ନ କ୍ରୀଡ଼ାରେ ଉଚ୍ଚସ୍ଥାନ ଲାଭ କରୁଥିଲେ, ସେମାନେ ସମାଜରେ ସମାଦୃତ ହେଉଥିଲେ ।

ପୂର୍ବକାଳରେ ଏହି କ୍ରୀଡ଼ା ଗ୍ରୀସ୍ ଦେଶର ଅଲିମ୍ପିଅରେ ଅନୁଷ୍ଠିତ ହେଉଥିଲେହେଁ ଏଥିରେ ଗ୍ରୀସ୍‌ର ପ୍ରତିଯୋଗୀମାନଙ୍କ ସହିତ ନିକଟବର୍ତ୍ତୀ ଇଟାଲି, ସିସିଲି, ଏସିଆ ଓ ଅଫ୍ରିକାର କେତେକ ରାଜ୍ୟର ପ୍ରତିଯୋଗୀମାନେ ମଧ୍ୟ ସ୍ଥାନ ପାଉଥିଲେ । ପୃଥିବୀର ସମସ୍ତ ଦୂର ଦେଶର ପ୍ରତିଯୋଗୀମାନେ ମିଳିତ ହେବାର ସୁବିଧା ସେତେବେଳେ ନ ଥିଲା । ଏହି ଅନୁଷ୍ଠାନଦ୍ୱାରା ଯେ କେବଳ ଶାରୀରିକ ବଳ-କୌଶଳକୁ ଉତ୍ସାହିତ କରାଯାଉଥିଲା ତାହା ନୁହେଁ, ବିଭିନ୍ନ ଦେଶମଧ୍ୟରେ ଶାନ୍ତି ଓ ସଦ୍ଭାବର ପ୍ରତିଷ୍ଠା ସଙ୍ଗେ ଶିଳ୍ପବାଣିଜ୍ୟଦ୍ରବ୍ୟାଦିର ଆଦାନପ୍ରଦାନର ମଧ୍ୟ ସୁବିଧା ହେଉଥିଲା ।

ଆଜିକାଲି ସାଧାରଣ କ୍ରୀଡ଼ା-ପ୍ରତିଯୋଗିତାରେ ବିଜେତାମାନଙ୍କୁ ସ୍ୱର୍ଣ୍ଣ ବା ରୌପ୍ୟନିର୍ମିତ ପାତ୍ର (Cup), ପଦକ (medal) ପ୍ରଭୃତି ପୁରସ୍କାର ଦିଆଯିବାର ବିଧି ପ୍ରଚଳିତ; କିନ୍ତୁ ଅଲିମ୍ପିକ୍ କ୍ରୀଡ଼ାରେ ବିଜୟୀ ପ୍ରତିଯୋଗୀଙ୍କୁ ପୁରସ୍କାରସ୍ୱରୂପ ଅଲିଭ୍‌ପତ୍ରରେ

ନିର୍ମିତ ଗୋଟିଏ ମୁକୁଟ ଦିଆଯାଉଥିଲା । ପାଶ୍ଚାତ୍ୟ ଦେଶମାନଙ୍କରେ ଅଲିଭ ବୃକ୍ଷ ବିଶେଷଭାବରେ ପୂଜିତ ହୋଇଥାଏ । ଏହାର ଶାଖା ଶାନ୍ତିର ପ୍ରତୀକରୂପେ ବିବେଚିତ। ଏଥିରୁ ଅନୁମିତ ହୁଏ ଯେ, ଅଲିଭ୍‌ପତ୍ରର ମୁକୁଟ ପ୍ରଦାନ କରିବାଦ୍ୱାରା ଏହାର ପ୍ରତିଯୋଗୀତାକୁ ଶାନ୍ତିର ଅଗ୍ରଦୂତରୂପେ ଗ୍ରହଣ କରାଯାଏ। ଏହି ମୁକୁଟର ଆର୍ଥିକ ମୂଲ୍ୟ ନଗଣ୍ୟ ହେଲେହେଁ, ତାହାକୁ ଲାଭ କରିବା ପରମ ଶ୍ଲାଘାର ବିଷୟ ଥିଲା ।



[ ଏଥେନ୍‌ସ୍‌ର କ୍ରୀଡ଼ାୟତନ ]

ପ୍ରାୟ ଏକ ସହସ୍ର ବର୍ଷପର୍ଯ୍ୟନ୍ତ ଏହି ଅଲିମ୍ପିକ୍ କ୍ରୀଡ଼ା ଚାଲିବା ପରେ ଗ୍ରୀକ୍ ଓ ରୋମାନ୍ ଜାତିମଧ୍ୟରେ ପ୍ରାଧାନ୍ୟ ନେଇ ବିବାଦ ଉପସ୍ଥିତ ହେବାରୁ ୩୯୪ ଖ୍ରୀଷ୍ଟାବ୍ଦରେ ଏହା ବନ୍ଦ ହୋଇଗଲା । ସୁଦୀର୍ଘ ଦେଢ଼ ହଜାର ବର୍ଷପର୍ଯ୍ୟନ୍ତ ଏହି କ୍ରୀଡ଼ା ହୋଇପାରି ନ ଥିଲା; କିନ୍ତୁ ଯେଉଁ ମହତ୍ ଉଦ୍ଦେଶ୍ୟରେ ଏହାର ସୃଷ୍ଟି ହୋଇଥିଲା, ତାହାର ଆବଶ୍ୟକତା ଚିନ୍ତାଶୀଳ ଲୋକେ

ସର୍ବଦା ଉପଲବ୍ଧି କରୁଥିଲେ । ତେଣୁ ବିଶ୍ୱଶାନ୍ତି ଓ ମୈତ୍ରୀ ସ୍ଥାପନ କରି, ପରସ୍ପରମଧ୍ୟରେ ଭ୍ରାତୃଭାବ ପ୍ରତିଷ୍ଠା କରିବାପାଇଁ ୧୮୯୬ ଖ୍ରୀଷ୍ଟାବ୍ଦରେ ସେହି ପ୍ରାଚୀନ ଅଲିମ୍ପିକ୍ କ୍ରୀଡ଼ାର ପୁନଃ ପ୍ରବର୍ତ୍ତନ ହେଲା । ଏଥିରେ ପ୍ରଧାନ ନେତୃତ୍ୱ ନେଇଥିଲେ ଜଣେ ଫରାସୀ ଯୁବକ । ତାଙ୍କର ନାମ ବ୍ୟାରନ୍ ପେୟାରିଡ଼ କୁବାର୍ଟିନ୍ । ଏହାର ପୁନଃପ୍ରବର୍ତ୍ତନ ହେଲାବେଳକୁ କାଳର ଧ୍ୱଂସକାରୀ ପ୍ରଭାବରେ ଗ୍ରୀସ୍‌ର ଅଲିମ୍ପିଆ ଗୋଟିଏ ଧ୍ୱଂସସ୍ତୂପରେ ପରିଣତ ହୋଇଥିଲା । ଗ୍ରୀସ୍‌ର ଅନ୍ୟତମ ପ୍ରଧାନ ନଗରୀ ଏଥେନ୍ସ୍‌ରେ ଯେଉଁ ବିରାଟ କ୍ରୀଡ଼ାୟତନ ଥିଲା, ତାହା ମଧ୍ୟ ଧ୍ୱଂସସ୍ତୂପରେ ପରିଣତ ହୋଇଥିଲା । ତଥାପି ପ୍ରତିଯୋଗିତାର ସ୍ଥାନସ୍ୱରୂପ ଏଥେନ୍ସ୍ ନିର୍ବାଚିତ ହେଲା ଏବଂ ପୁରାତନ କ୍ରୀଡ଼ାୟତନର ଭଗ୍ନାବଶେଷଉପରେ ନୂତନ କ୍ରୀଡ଼ାୟତନ ( Stadium ) ନିର୍ମିତ ହେଲା । ସେହି ଦିନଠାରୁ ପ୍ରତି ଚାରି ବର୍ଷ ଅନ୍ତରରେ ଅଲିମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହୋଇ ଆସୁଅଛି । ବର୍ତ୍ତମାନ ଏହି କ୍ରୀଡ଼ା ବିଭିନ୍ନ ବର୍ଷ ପୃଥିବୀର ବିଭିନ୍ନ ଦେଶରେ ଅନୁଷ୍ଠିତ ହେଉଅଛି ଏବଂ ଏହା କୌଣସି ଗୋଟିଏ ଦେଶ ବା ଜାତିର ଅନୁଷ୍ଠାନରୂପେ ବିବେଚିତ ନ ହୋଇ ଗୋଟିଏ ଯଥାର୍ଥ ଆନ୍ତର୍ଜାତିକ ଅନୁଷ୍ଠାନରୂପେ ପରିଗଣିତ ହେଉଅଛି ।

ବିଜ୍ଞାନର ଉନ୍ନତି ସଙ୍ଗେ ପୃଥିବୀର ଦେଶ ଦେଶ ମଧ୍ୟରେ ବ୍ୟବଧାନ ହ୍ରାସ ପାଉଅଛି । ଟେଲିଗ୍ରାଫ, ଟେଲିଫୋନ୍, ଟେଲିପ୍ରିଣ୍ଟର, ବେତାରଯନ୍ତ୍ରଦ୍ୱାରା ସମ୍ବାଦପ୍ରେରଣ ଯେପରି ଅତ୍ୟଳ୍ପ ସମୟମଧ୍ୟରେ ହୋଇପାରୁଅଛି, ସେହିପରି ରେଳ, ମୋଟର, ଏରୋପ୍ଲେନ, ହେଲିକପ୍ଟର୍ ପ୍ରଭୃତି ଯାନଦ୍ୱାରା ମନୁଷ୍ୟ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଅଳ୍ପ ସମୟମଧ୍ୟରେ ଯାଇପାରୁଅଛି ।

ଏହା ଫଳରେ ପୃଥିବୀର ପ୍ରାୟ ସମସ୍ତ ଦେଶର ଲୋକେ ଅଲମ୍ପିକ୍ କ୍ରୀଡ଼ାରେ ପ୍ରତିଯୋଗିତା କରିବାର ସୁଯୋଗ ପାଇପାରୁଅଛନ୍ତି ।

ଅଲମ୍ପିକ୍ କ୍ରୀଡ଼ାରେ ସତ୍ୟ, ନ୍ୟାୟ, ସଦିଚ୍ଛା, ଶାନ୍ତି ଓ ମୈତ୍ରୀର ଯେଉଁ ଗୌରବମୟ ଆଦର୍ଶ ନିହିତ ଅଛି, ତାହା ପ୍ରତିଯୋଗୀ ଦେଶମାନଙ୍କୁ ପ୍ରଭାବିତ କରିବା ସୁନିଶ୍ଚିତ । ସାଧାରଣ କ୍ରୀଡ଼ାଭୂମିରେ ପ୍ରତିଯୋଗୀମାନେ ଯେଉଁ ସାଧୁତା ଓ ଉଦାରତା ପ୍ରଦର୍ଶନ କରିଥାନ୍ତି, ସେଥିରୁ ଏହି ଅଲମ୍ପିକ୍ କ୍ରୀଡ଼ାଦ୍ୱାରା ଦିନେ ଅନ୍ତର୍ଜାତିକ ଶାନ୍ତି, ମୈତ୍ରୀ ଓ ନ୍ୟାୟର ପ୍ରତିଷ୍ଠା ହୋଇପାରିବ ବୋଲି ଆଶା କରିବା ଅସମୀଚୀନ ନୁହେଁ ।

ଆମ୍ଭମାନଙ୍କ ପକ୍ଷରେ ଆନନ୍ଦର ବିଷୟ ଏହି ଯେ, ଭାରତର ପ୍ରତିନିଧିମାନେ ଅନେକ ବର୍ଷ ହେଲା ଅଲମ୍ପିକ୍ କ୍ରୀଡ଼ାରେ ପ୍ରତିଯୋଗିତା କରି ଆସୁଅଛନ୍ତି । କେବଳ ସେତିକି ନୁହେଁ, ଭାରତୀୟ ହକି ଦଳ ବିଗତ ଗୃହିଗୋଟି କ୍ରୀଡ଼ାରେ ଶୀର୍ଷସ୍ଥାନ ଅଧିକାର କରି ଜଗତ୍‌ସମକ୍ଷରେ ସମ୍ମାନିତ ହୋଇଅଛନ୍ତି ।

## ପ୍ରଶ୍ନ

୧ । ଅଲମ୍ପିକ୍ କ୍ରୀଡ଼ାର ଏପରି ନାମକରଣ କାହିଁକି ହୋଇଅଛି ?

୨ । ଅଲମ୍ପିକ୍ କ୍ରୀଡ଼ାର ସଂକ୍ଷିପ୍ତ ଇତିହାସ ଲେଖ ।

୩ । ଏହି କ୍ରୀଡ଼ାଦ୍ୱାରା କିପରି ବିଶ୍ୱଶାନ୍ତି ଓ ମୈତ୍ରୀ ପ୍ରତିଷ୍ଠିତ ହେବାର ସମ୍ଭାବନା ଅଛି ?

୪ । ବିଶେଷ୍ୟକୁ ବିଶେଷଣରେ ଓ ବିଶେଷଣକୁ ବିଶେଷ୍ୟରେ ପରିଣତ କରି ପ୍ରତ୍ୟେକକୁ ବାକ୍ୟରେ ବ୍ୟବହାର କର— ମହତ୍, ପ୍ରସିଦ୍ଧ, ଶାନ୍ତି, ମୁକ୍ତି, ବିଭିନ୍ନ, ବିବେଚନା, ଶ୍ଲାଘା, ଅନୁଷ୍ଠିତ, ପ୍ରବର୍ତ୍ତିତ ।

# ତିନୋଟି ପ୍ରଶ୍ନ

[ ଟଲ୍‌ଷ୍ଟୟଙ୍କ ଲେଖାର ଅବଲମ୍ବନରେ ]

ଥରେ ଜଣେ ରାଜା ଭାବିଲେ, ସେ ଯଦି ତିନୋଟି ପ୍ରଶ୍ନର ସମାଧାନ କରିପାରିବେ, ତେବେ ତାଙ୍କର ଯାବତୀୟ କାର୍ଯ୍ୟ ସଫଳ ହୋଇପାରିବ । ପ୍ରଶ୍ନ ତିନୋଟି ହେଉଅଛି—ପ୍ରତ୍ୟେକ କାର୍ଯ୍ୟ କରିବାର ଉପଯୁକ୍ତ ସମୟ କେତେବେଳେ ? କେଉଁ ଲୋକ ସର୍ବାପେକ୍ଷା ଅଧିକ ଆବଶ୍ୟକ ? କେଉଁ କାର୍ଯ୍ୟଟି ପ୍ରଧାନ ?

ଏହି ପ୍ରଶ୍ନତ୍ରୟର ଉତ୍ତର ଜାଣିବା ଅଭିପ୍ରାୟରେ ସେ ରାଜ୍ୟମଧ୍ୟରେ ଘୋଷଣା ଦେଲେ—ଯେଉଁ ବ୍ୟକ୍ତି ଏହି ପ୍ରଶ୍ନମାନଙ୍କର ସନ୍ତୋଷଜନକ ଉତ୍ତର ଦେଇପାରିବେ, ସେ ରାଜାଙ୍କଦ୍ୱାରା ବିଶେଷଭାବରେ ପୁରସ୍କୃତ ହେବେ । ବହୁସଂଖ୍ୟକ ବିଦ୍ୱାନ୍ ବ୍ୟକ୍ତି ପୁରସ୍କାର ଆଶାରେ ରାଜାଙ୍କ ନିକଟରେ ଉପସ୍ଥିତ ହେଲେ; କିନ୍ତୁ ସେମାନଙ୍କର ଉତ୍ତର ସବୁ ରାଜାଙ୍କୁ ସମୀଚୀନ ବୋଧ ହେଲା ନାହିଁ ।



[ ଟଲ୍‌ଷ୍ଟୟ ]

ପ୍ରଥମ ପ୍ରଶ୍ନର ଉତ୍ତରରେ କେତେକେ କହିଲେ ଯେ, ପ୍ରତ୍ୟେକ କାର୍ଯ୍ୟର ଉପଯୁକ୍ତ ସମୟ ଜାଣିବା ନିମନ୍ତେ ବର୍ଷର ମାସ, ଦିନ ଓ ଘଣ୍ଟାର ଗୋଟିଏ କର୍ମନିର୍ଘଣ୍ଟ କରି ରଖିବା ଉଚିତ । ତାହାହେଲେ ରାଜକାର୍ଯ୍ୟ ନିର୍ଦ୍ଦିଷ୍ଟ ସମୟରେ ସାଧିତ ହୋଇପାରିବ ।

କେତେଜଣ ଏହି ମତର ବିରୋଧ କରି କହିଲେ, "ଭବିଷ୍ୟତରେ କେତେବେଳେ କେଉଁ କାର୍ଯ୍ୟ କରିବାକୁ ହେବ, ତାହା ଜାଣି ଗୋଟିଏ କର୍ମନିର୍ଘଣ୍ଟ ପ୍ରସ୍ତୁତ କରିବା ଅସମ୍ଭବ । ରାଜାଙ୍କୁ ବିଳାସବ୍ୟସନରେ ଲିପ୍ତ ନ ହୋଇ ସମସ୍ତ ବିଷୟପ୍ରତି ଅବହିତ ରହିବାକୁ ହେବ ଏବଂ ଯେଉଁ କାର୍ଯ୍ୟ ସର୍ବାପେକ୍ଷା ଅଧିକ ପ୍ରୟୋଜନୀୟ, ତାହାହିଁ କରିବାକୁ ହେବ ।" ଅନ୍ୟ କେତେକ ମତ ବ୍ୟକ୍ତ କଲେ, "ଜଣେ ବ୍ୟକ୍ତି ପକ୍ଷରେ ସମସ୍ତ ବିଷୟପ୍ରତି ଲକ୍ଷ୍ୟ ରଖିବା ଅସମ୍ଭବ । ତେଣୁ ଏହି ଭାର ଗୋଟାଏ ବିଜ୍ଞ ପରିଷଦ ଉପରେ ନ୍ୟସ୍ତ ରହିବା ଉଚିତ ଓ ଏହି ପରିଷଦ ରାଜାଙ୍କର ପ୍ରତ୍ୟେକ କାର୍ଯ୍ୟପାଇଁ ସମୟ ନିର୍ଦ୍ଦେଶ କରିବ ।"

କେହି କେହି ପୁଣି କହିଲେ ଯେ, ଅନେକ ସମୟରେ ରାଜାଙ୍କୁ ସଙ୍ଗେ ସଙ୍ଗେ କାର୍ଯ୍ୟ ନିର୍ଦ୍ଧାରଣ କରିବାକୁ ପଡ଼ିପାରେ । ପ୍ରତ୍ୟେକ ବିଷୟରେ ପରିଷଦର ମତ ଗ୍ରହଣ କରିବା ରାଜାଙ୍କ ପକ୍ଷରେ ସମ୍ଭବପର ନୁହେଁ । କେବଳ ଦୈବଜ୍ଞମାନେ ଭବିଷ୍ୟତ ଜାଣିପାରନ୍ତି; ତେଣୁ ରାଜା ଦୈବଜ୍ଞମାନଙ୍କ ସାହାଯ୍ୟରେ ନିଜର କର୍ମପନ୍ଥା ସ୍ଥିର କରିବା ଉଚିତ ।

ଏ ଉତ୍ତରଗୁଡ଼ିକ ମଧ୍ୟରୁ କୌଣସିଟି ସମୀଚୀନ ବିବେଚିତ ହେଲା ନାହିଁ ।

ଦ୍ୱିତୀୟ ପ୍ରଶ୍ନର ଯେଉଁ ସବୁ ଉତ୍ତର ମିଳିଲା, ସେଗୁଡ଼ିକ ମଧ୍ୟ ବିଭିନ୍ନ ପ୍ରକାରର । କେହି କହିଲେ, "ଧର୍ମଯାଜକ ବା ପୁରୋହିତ ସର୍ବାପେକ୍ଷା ଆବଶ୍ୟକ ବ୍ୟକ୍ତି ।" ଅନ୍ୟ କେତେଜଣ କହିଲେ, "ରାଜାଙ୍କ ପକ୍ଷରେ ଯୋଦ୍ଧାମାନେହିଁ ସର୍ବାପେକ୍ଷା ଅଧିକ ପ୍ରୟୋଜନୀୟ ।"

ତୃତୀୟ ପ୍ରଶ୍ନର ଉତ୍ତରରେ ଜଣେ କହିଲେ, "ଜଗତରେ ବିଜ୍ଞାନଚର୍ଚ୍ଚାହିଁ ପ୍ରଧାନ କାର୍ଯ୍ୟ ହେବା ଉଚିତ ।" ଅନ୍ୟ କେତେକଙ୍କ ମତରେ ଯୁଦ୍ଧରେ ସୈନ୍ୟଚାଳନା ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ ବୋଲି ବିବେଚିତ ହେଲା । ଆଉ କାହାରି ମତରେ ଧର୍ମଚର୍ଚ୍ଚାହିଁ ରାଜାଙ୍କର ଶ୍ରେଷ୍ଠ କର୍ତ୍ତବ୍ୟ ବୋଲି ନିର୍ଦ୍ଦିଷ୍ଟ ହେଲା ।

ଏହି ସମସ୍ତ ପରସ୍ପରବିରୋଧୀ ଉତ୍ତର ଶୁଣି ରାଜା କୌଣସିଟିକୁ ସନ୍ତୋଷଜନକ ମନେ ନ କରି କାହାରିକୁ ପୁରସ୍କୃତ କଲେ ନାହିଁ ।

ସେହି ରାଜ୍ୟରେ ଜଣେ ପ୍ରସିଦ୍ଧ ସନ୍ୟାସୀ ଥିଲେ । ସେ ବନମଧ୍ୟରେ କୁଟୀର ନିର୍ମାଣ କରି ବାସ କରୁଥିଲେ ଏବଂ ଉଚ୍ଚପଦସ୍ଥ ବ୍ୟକ୍ତିମାନଙ୍କଠାରୁ ନିଜକୁ ଦୂରରେ ରଖିଥିଲେ । ରାଜା ଶେଷରେ ନିଜ ପ୍ରଶ୍ନତ୍ରୟର ଉତ୍ତର ପାଇବା ଆଶାରେ ସନ୍ୟାସୀଙ୍କ ନିକଟକୁ ଯାତ୍ରା କଲେ ।

ସନ୍ୟାସୀଙ୍କ କୁଟୀରଠାରୁ କିଛି ଦୂରରେ ରାଜା ଘୋଡ଼ାରୁ ଅବତରଣ କଲେ ଏବଂ ରାଜଭୂଷା ପରିତ୍ୟାଗପୂର୍ବକ ସାଧାରଣ ବେଶରେ ସନ୍ୟାସୀଙ୍କ ନିକଟକୁ ଗମନ କଲେ । ତାଙ୍କର ଦେହରକ୍ଷୀମାନେ ଅଶ୍ୱନିକଟରେ ରାଜାଙ୍କ ପ୍ରତ୍ୟାବର୍ତ୍ତନକୁ ଅପେକ୍ଷା କରି ରହିଲେ ।

ସେତେବେଳକୁ ସନ୍ୟାସୀ କୋଦାଳ ସାହାଯ୍ୟରେ ଆଶ୍ରମ-ନିକଟସ୍ଥ ଭୂମିଖନନରେ ନିରତ ଥିଲେ । ରାଜା ତାହାଙ୍କ ନିକଟରେ ଉପସ୍ଥିତ ହୁଅନ୍ତେ ସେ ତାଙ୍କୁ ସାଦର ସମ୍ଭାଷଣ ଜଣାଇ ପୁଣି ଭୂମିଖନନରେ ବ୍ୟାପୃତ ରହିଲେ । ସନ୍ୟାସୀ ଦୁର୍ବଳଶରୀର ହୋଇଥିବାରୁ ବିଶେଷ କ୍ଳାନ୍ତି ଅନୁଭବ କଲା ଭଳି ଜଣାଯାଉଥିଲା ।

ରାଜା ସନ୍ନ୍ୟାସୀଙ୍କୁ ସମ୍ବୋଧନ କରି କହିଲେ, "ମହାଭାଗ, ମୁଁ ତିନୋଟି ପ୍ରଶ୍ନର ଉତ୍ତର ପାଇବା ଆଶାରେ ଆପଣଙ୍କ ନିକଟକୁ ଆସିଅଛି । ମୋର ପ୍ରଶ୍ନଗୁଡ଼ିକ ହେଉଛି—ପ୍ରତ୍ୟେକ କାର୍ଯ୍ୟର ଉପଯୁକ୍ତ ସମୟ କିପରି ନିର୍ଣ୍ଣୟ କରାଯାଇପାରିବ ? କେଉଁ ଲୋକ ସର୍ବାପେକ୍ଷା ଅଧିକ ପ୍ରୟୋଜନୀୟ ? କେଉଁ କାର୍ଯ୍ୟଟି ପ୍ରଧାନ ବୋଲି ମନେ କରିବାକୁ ହେବ ।

ସନ୍ନ୍ୟାସୀ ମନୋଯୋଗ ସହକାରେ ରାଜାଙ୍କର ପ୍ରଶ୍ନଗୁଡ଼ିକ ଶୁଣିଲେ; କିନ୍ତୁ କୌଣସି ଉତ୍ତର ନ ଦେଇ ପୂର୍ବବତ୍ ଭୂମି ଖୋଳିବାରେ ଲାଗିଲେ ।

ରାଜା ଦେଖିଲେ ଯେ, ସନ୍ନ୍ୟାସୀ ଅବିଶ୍ରାନ୍ତ ପରିଶ୍ରମ କରି କ୍ଲାନ୍ତ ହୋଇପଡ଼ିଲେଣି । ସେ କହିଲେ, "ମହାଭାଗ, ମୋତେ କୋଦାଳ ଦିଅନ୍ତୁ । ମୁଁ ଟିକିଏ କାର୍ଯ୍ୟ କରେ; ଆପଣ ବିଶ୍ରାମ ନିଅନ୍ତୁ ।"

ସନ୍ନ୍ୟାସୀ ଧନ୍ୟବାଦ ଜଣାଇ କୋଦାଳଟି ରାଜାଙ୍କ ହାତକୁ ବଢ଼ାଇଦେଲେ ଓ ବୃକ୍ଷମୂଳରେ ଉପବେଶନ କଲେ ।

ରାଜା କିୟତ୍‌କାଳମଧ୍ୟରେ ଦୁଇଟି କେଦାର ପ୍ରସ୍ତୁତ କରିସାରି ପୁନରାୟ ସନ୍ନ୍ୟାସୀଙ୍କୁ ପୂର୍ବୋକ୍ତ ପ୍ରଶ୍ନଗୁଡ଼ିକର ଉତ୍ତର ପ୍ରାର୍ଥନା କଲେ; କିନ୍ତୁ ସନ୍ନ୍ୟାସୀ କୌଣସି ଉତ୍ତର ନ ଦେଇ ବିଶ୍ରାମସ୍ଥାନରୁ ଉଠି କହିଲେ, "ଏବେ ତୁମ୍ଭେ ବିଶ୍ରାମ କର; ମୁଁ ଟିକିଏ କାର୍ଯ୍ୟ କରେ ।" ଏହା କହି କୋଦାଳଟି ନେବା ଉଦ୍ଦେଶ୍ୟରେ ସେ ରାଜାଙ୍କ ଆଡ଼କୁ ହାତ ବଢ଼ାଇଲେ; ମାତ୍ର ରାଜା କୋଦାଳଟି ନ ଦେଇ ପୁଣି କାର୍ଯ୍ୟ କରିବାକୁ ଲାଗିଲେ ।

ଏହିପରି କିଛି ସମୟ ଅତିକ୍ରାନ୍ତ ହେଲା । ସୂର୍ଯ୍ୟ କ୍ରମେ ଆଶ୍ରମବୃକ୍ଷାବଳୀର ପଶ୍ଚାଦ୍‌ଭାଗରେ ଅସ୍ତ ହୋଇଆସିଲେ । ତେଣୁ

ରାଜା କୋଦାଳଟି ରଖିଦେଇ କହିଲେ, "ମହାଶୟ, ମୁଁ ପ୍ରଶ୍ନ ତିନିଟିର ଉତ୍ତର ପାଇବା ନିମନ୍ତେ ଆପଣଙ୍କ ନିକଟକୁ ଆସିଥିଲି । ଯଦି ଆପଣ ଉତ୍ତର ଦେଇପାରିବେ ନାହିଁ, ତାହା ପ୍ରକାଶ କରନ୍ତୁ, ମୁଁ ଫେରିଯିବି ।"

ସନ୍ନ୍ୟାସୀ ହଠାତ୍ ଜଙ୍ଗଲ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, "କିଏ ଜଣେ ଏ ଆଡ଼କୁ ଧାଇଁ ଆସୁଅଛି । ଲୋକଟି କିଏ, ଆସ ଦେଖିବା ।"

ରାଜା ଦେଖିପାରିଲେ ଯେ, ଜଣେ ଶ୍ମଶ୍ରୁଧାରୀ ବ୍ୟକ୍ତି ବନମଧ୍ୟରୁ ଦୌଡ଼ି ଆସୁଅଛି । ସେ ତାହାର ହାତ ଦୁଇଟିକୁ ପେଟଉପରେ ଚୁପି ଧରିଅଛି ଓ ସେଥିରୁ ରକ୍ତସ୍ରାବ ହେଉଅଛି । ଲୋକଟି ନିକଟବର୍ତ୍ତୀ ହେବାମାତ୍ରେ ଅଚେତନ ହୋଇ ଭୂମିରେ ପଡ଼ିଗଲା । ରାଜା ଓ ସନ୍ନ୍ୟାସୀ ତାହା ନିକଟକୁ ଆସି ଦେଖିଲେ, ତାହାର ପେଟରୁ ଶସ୍ତ୍ରାଘାତ ହେତୁ ରକ୍ତ ବହୁଅଛି । ରକ୍ତସ୍ରାବ ଫଳରେ ତାହାର ମୃତ୍ୟୁ ଘଟିପାରେ ବୋଲି ଆଶଙ୍କା କରି ସେ ଦୁହେଁ ତାହାର ଶୁଶ୍ରୂଷା କରିବାକୁ ଲାଗିଲେ । ରାଜା ନିଜର ରୁମାଲ ସାହାଯ୍ୟରେ ରକ୍ତସ୍ରାବ ରୋଧ କରିବାକୁ ଚେଷ୍ଟା କଲେ । ସନ୍ନ୍ୟାସୀ ମଧ୍ୟ ଆଶ୍ରମରୁ ଖଣ୍ଡିଏ ଗାମୁଛା ଆଣି ଦେଲେ । ଏହାପରେ କେତେକ ସମୟ ଚେଷ୍ଟା କରିବା ପରେ ରକ୍ତସ୍ରାବ ବନ୍ଦ ହେଲା ଓ ଲୋକଟିର ସଂଜ୍ଞା ଫେରି ଆସିଲା । ଆହତ ବ୍ୟକ୍ତିଟି କିଛି ପାନ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ରାଜା ଗୋଟିଏ ପାତ୍ରରେ ପରିଷ୍କୃତ ଜଳ ଆଣି ତାହାକୁ ଦେଲେ ।

ଏହିମଧ୍ୟରେ ସୂର୍ଯ୍ୟ ଅସ୍ତ ହୋଇଯାଇଥିଲେ । ବାହାରେ ବିଶେଷ ଶୈତ୍ୟ ଅନୁଭୂତ ହେଉଥିବାର ଦେଖି ରାଜା ସନ୍ନ୍ୟାସୀଙ୍କ

ସାହାଯ୍ୟରେ ସେହି ଲୋକଟିକୁ ଆଶ୍ରମମଧ୍ୟକୁ ନେଇ ଗୋଟିଏ ଶଯ୍ୟାରେ ଶୁଆଇଦେଲେ । ସେ ଚକ୍ଷୁ ମୁଦ୍ରିତ କରି ନିଦ୍ରା ଗଲା ।

ରାଜା ସେଦିନ ଦୀର୍ଘ ପଥ ପଦବ୍ରଜରେ ଆସିଥିଲେ । ଭୂମି ଖୋଳିବା ଓ ଆହତ ବ୍ୟକ୍ତିର ସେବା କରିବାରେ ମଧ୍ୟ ତାଙ୍କୁ ଯଥେଷ୍ଟ ପରିଶ୍ରମ କରିବାକୁ ହୋଇଥିଲା । ତେଣୁ ସେ ଅଳ୍ପ ସମୟ ପରେ ଆଶ୍ରମର ଦ୍ୱାରଦେଶରେ ଗଭୀର ନିଦ୍ରାଭିଭୂତ ହୋଇପଡ଼ିଲେ ।

ପ୍ରାତଃକାଳରେ ନିଦ୍ରାଭଙ୍ଗ ହେଲାବେଳକୁ ରାଜା ନିଜକୁ ଏକ ଅପରିଚିତ ସ୍ଥାନରେ ଦେଖି ବିସ୍ମିତ ହେଲେ । କିଛି କ୍ଷଣ ପରେ ପୂର୍ବ ଦିନର ସମସ୍ତ ଘଟଣା ତାଙ୍କର ସ୍ମୃତିପଥରେ ଜାଗରୂକ ହୋଇଉଠିଲା । ଏତିକିବେଳେ ଶ୍ମଶ୍ରୁଧାରୀ ବ୍ୟକ୍ତିଟି ବିଛଣାରେ ପଡ଼ିରହି ରାଜାଙ୍କ ଆଡ଼କୁ କରୁଣ ଦୃଷ୍ଟି ନିକ୍ଷେପ କରି କ୍ଷୀଣସ୍ୱରରେ କହିଲା, "ମହାରାଜ, ଏ ଅଧମକୁ କ୍ଷମା କରନ୍ତୁ ।"

ରାଜା ଉତ୍ତର କଲେ, "ମୁଁ ତୁମ୍ଭଙ୍କୁ ଚିହ୍ନେ ନାହିଁ । ତୁମ୍ଭେ ମୋ ନିକଟରେ କି ଅପରାଧ କରିଛ ଯେ କ୍ଷମା ଦେବି ?"

ଆହତ ବ୍ୟକ୍ତିଟି କହିବାକୁ ଲାଗିଲା, "ଆପଣ ମୋତେ ଜାଣନ୍ତି ନାହିଁ; କିନ୍ତୁ ମୁଁ ଆପଣଙ୍କୁ ଜାଣେ । ମୁଁ ଆପଣଙ୍କର ଜଣେ ପ୍ରଧାନ ଶତ୍ରୁ । ଆପଣ ମୋର ଭ୍ରାତାର ମୃତ୍ୟୁଦଣ୍ଡାଦେଶ ଦେଇ ମୋର ସମ୍ପତ୍ତି ବାଜେୟାପ୍ତ କରି ନେଇଥିଲେ । ତେଣୁ ମୁଁ ପ୍ରତିଶୋଧ ନେବାପାଇଁ ପ୍ରତିଜ୍ଞା କରି ଆସିଥିଲି । ଆପଣ ଏକାକୀ ସନ୍ନ୍ୟାସୀଙ୍କ ଆଶ୍ରମକୁ ଆସିଥିବା ବିଷୟ ଜାଣିପାରି ଫେରିବା ସମୟରେ ଆପଣଙ୍କୁ ହତ୍ୟା କରିବା ଉଦ୍ଦେଶ୍ୟରେ ମୁଁ ଅପେକ୍ଷା କରିଥିଲି; କିନ୍ତୁ ସନ୍ଧ୍ୟାସୁଦ୍ଧା ଆପଣ ନ ଫେରିବାରୁ ମୁଁ ଲୁଚିଥିବା ସ୍ଥାନରୁ ବାହାରି ସନ୍ଧାନ ନେବାପାଇଁ ଆସୁଥିଲି । ଏହି

ସମୟରେ ଆପଣଙ୍କର ଦେହରକ୍ଷୀମାନେ ମୋତେ ଦେଖି ଓ ମୋର ଦୁରଭିସନ୍ଧି ଜାଣିପାରି ଆକ୍ରମଣ କଲେ । ମୁଁ ଆହତ ହୋଇ ସେମାନଙ୍କ ନିକଟରୁ ପଳାଇ ଆସିଥିଲି । ଆପଣ ଚେଷ୍ଟା କରି ନ ଥିଲେ ବହୁଳ ରକ୍ତସ୍ରାବ ଫଳରେ ମୋର ମୃତ୍ୟୁ ଘଟିଥାନ୍ତା । ମୁଁ ଆପଣଙ୍କୁ ହତ୍ୟା କରିବାକୁ ଆସିଥିଲି; ମାତ୍ର ଆପଣ ମୋତେ ମୃତ୍ୟୁ-ମୁଖରୁ ରକ୍ଷା କରିଅଛନ୍ତି । ଯଦି ମୁଁ ଆରୋଗ୍ୟ ଲାଭ କରେଁ, ତେବେ ଆଜୀବନ ଆପଣଙ୍କର ଦାସାନୁଦାସ ହୋଇ ରହିବି ଏବଂ ମୋର ପୁତ୍ରପୌତ୍ରାଦି ଆପଣଙ୍କର ଅନୁଗତ ହୋଇ ରହିବେ । ମୋର ଅପରାଧ କ୍ଷମା କରନ୍ତୁ ।"

ଏପରି ଅକ୍ଳେଶରେ ଶତ୍ରୁ ବଶୀଭୂତ ହୋଇ କ୍ଷମା ଭିକ୍ଷା କରିବାର ଦେଖି ରାଜା ଆନନ୍ଦିତ ହେଲେ ଏବଂ ପ୍ରସନ୍ନଚିତ୍ତରେ ତାହାକୁ କ୍ଷମା ଦେଲେ । ଅନନ୍ତର ମଧ୍ୟ ସେ ନିଜର ଚିକିତ୍ସକ ଓ କେତେକ ଭୃତ୍ୟଙ୍କୁ ତାହା ନିକଟକୁ ପଠାଇବାକୁ ଏବଂ ତାହାର ସମ୍ପତ୍ତି ପ୍ରତ୍ୟର୍ପଣ କରିବାକୁ ସ୍ୱୀକୃତ ହେଲେ ।

ଆହତ ବ୍ୟକ୍ତିଠାରୁ ବିଦାୟ ନେଇ ରାଜା ଆଶ୍ରମପ୍ରାଙ୍ଗଣକୁ ଯାଇ ସନ୍ନ୍ୟାସୀଙ୍କୁ ଅନ୍ୱେଷଣ କଲେ । ଫେରିଯିବା ପୂର୍ବରୁ ସନ୍ନ୍ୟାସୀଙ୍କୁ ଆଉ ଥରେ ପ୍ରଶ୍ନ ତିନୋଟି ପଚାରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ପୂର୍ବଦିନ ଖୋଳାଯାଇଥିବା କ୍ଷେତ୍ରଗୁଡ଼ିକରେ ସନ୍ନ୍ୟାସୀ କେତେକ ବୀଜ ରୋପଣ କରୁଥିଲେ । ରାଜା ତାଙ୍କର ସମ୍ମୁଖୀନ ହୋଇ କହିଲେ, "ମହାତ୍ମନ୍, ମୋର ପ୍ରଶ୍ନ ତିନୋଟିର ଉତ୍ତର ପାଇବାକୁ ଶେଷ ପ୍ରାର୍ଥନା ଜଣାଇବାପାଇଁ ମୁଁ ଆସିଅଛି ।"

ସନ୍ନ୍ୟାସୀ ପୂର୍ବବତ୍ ବୀଜ ରୋପଣ କରୁ କରୁ କହିଲେ, "ତୁମ୍ଭ ପ୍ରଶ୍ନମାନଙ୍କର ଉତ୍ତର ତ ତୁମ୍ଭେ ପାଇସାରିଛ ।"

ରାଜା ବିସ୍ମିତ ହୋଇ, କହିଲେ "କିପରି ? ମୁଁ ଆପଣଙ୍କର ଉଦ୍ଦେଶ୍ୟ ବୁଝିପାରୁ ନାହିଁ ।"

ସନ୍ନ୍ୟାସୀ ଉତ୍ତର ଦେଲେ, "ମୋର ଦୁର୍ବଳତା ଦେଖି ଯଦି ତୁମ୍ଭେ ମୋ ପ୍ରତି ଦୟାପରବଶ ହୋଇ କ୍ଷେତ ଦୁଇଟି ଖୋଳି ନ ଥାନ୍ତ ଏବଂ ସନ୍ଧ୍ୟା ପୂର୍ବରୁ ଫେରିଯାଇଥାନ୍ତ, ତାହାହେଲେ ଏହି ଶତ୍ରୁଭାବାପନ୍ନ ବ୍ୟକ୍ତିଟି ତୁମ୍ଭଙ୍କୁ ପଥମଧ୍ୟରେ ହତ୍ୟା କରିଥାନ୍ତା । ଏଥିରୁ ବୁଝିପାରିବ ଯେ, ଯେତେବେଳେ ତୁମ୍ଭେ ଭୂମି ଖୋଳିବାରେ ନିଯୁକ୍ତ ଥିଲ, ତାହା ତୁମ୍ଭ ପକ୍ଷରେ ଉତ୍କୃଷ୍ଟ ସମୟ ଏବଂ ସେତେବେଳେ ମୁଁ ଥିଲି ସର୍ବାପେକ୍ଷା ଅଧିକ ପ୍ରୟୋଜନୀୟ ବ୍ୟକ୍ତି; ମୋତେ ସାହାଯ୍ୟ କରିବା ଥିଲା ତୁମ୍ଭର ପ୍ରଧାନ କର୍ତ୍ତବ୍ୟ । ପରେ ଯେତେବେଳେ ଆହତ ବ୍ୟକ୍ତିଟି ଆମ୍ଭମାନଙ୍କ ନିକଟକୁ ଧାଇଁଆସିଲା ଓ ତୁମ୍ଭେ ତାହାର ଶୁଶ୍ରୂଷା କଲ, ସେହି ସମୟ ତୁମ୍ଭର ସର୍ବୋତ୍କୃଷ୍ଟ ସମୟ ଥିଲା; ସେ ସମୟରେ ଆହତ ଲୋକଟି ସର୍ବାପେକ୍ଷା ପ୍ରୟୋଜନୀୟ ବ୍ୟକ୍ତି ଏବଂ ତାହାର ଶୁଶ୍ରୂଷା କରିବା ତୁମ୍ଭର ପ୍ରଧାନ କର୍ତ୍ତବ୍ୟ ଥିଲା । ଏଥିରୁ ବୁଝିପାରିବ ଯେ; ବର୍ତ୍ତମାନ ସମୟହିଁ କାର୍ଯ୍ୟ କରିବାର ଉତ୍କୃଷ୍ଟ ସମୟ । କେବଳ ବର୍ତ୍ତମାନ ସମୟ ଉପରେ ମାନବର ଯାହା କିଛି କର୍ତ୍ତୃତ୍ୱ ଅଛି । ଏହି ବର୍ତ୍ତମାନ ସମୟରେ ଯେଉଁ ବ୍ୟକ୍ତି ତୁମ୍ଭ ନିକଟରେ ଅଛି, ସେ ସର୍ବାପେକ୍ଷା ଅଧିକ ପ୍ରୟୋଜନୀୟ । କାରଣ ଭବିଷ୍ୟତରେ ତାହା ସହିତ ତୁମ୍ଭର କୌଣସି ସମ୍ପର୍କ ଘଟି ନ ପାରେ । ସେହି ବ୍ୟକ୍ତିର ଉପକାର ସାଧନ କରିବା ତୁମ୍ଭର ଶ୍ରେଷ୍ଠ କର୍ତ୍ତବ୍ୟ । ଅପରର ମଙ୍ଗଳ ସାଧନ କରିବା ଅଭିପ୍ରାୟରେହିଁ ଭଗବାନ୍ ମାନବଙ୍କୁ ଇହଧାମକୁ ପ୍ରେରଣ କରିଅଛନ୍ତି ।"

## ପ୍ରଶ୍ନ

୧ । ରାଜାଙ୍କ ପ୍ରଥମ ପ୍ରଶ୍ନର ଉତ୍ତରରେ ରାଜ୍ୟର ପଣ୍ଡିତମାନେ କି କି ଉତ୍ତର ଦେଲେ ?

୨ । ସନ୍ନ୍ୟାସୀ କିପରିଭାବରେ ରାଜାଙ୍କ ପ୍ରଶ୍ନଗୁଡ଼ିକର ଉତ୍ତର ଦେଇଥିଲେ ?

୩ । "କେବଳ ବର୍ତ୍ତମାନ ଉପରେ ମାନବର ଯାହା କିଛି କର୍ତ୍ତୃତ୍ୱ ଅଛି ।"—ଏ ବାକ୍ୟର ଭାବ ବିଶଦଭାବରେ ବୁଝାଇଦିଅ ।

୪ । ନିମ୍ନଲିଖିତ ପ୍ରତ୍ୟକ୍ଷୋକ୍ତିକୁ ପରୋକ୍ଷୋକ୍ତିରେ ପ୍ରକାଶ କର ।
ସେ କହିଲେ, "ମହାଭାଗ······ବିଶ୍ରାମ କରନ୍ତୁ ।"

୫ । ତଳଲିଖିତ କଥାଗୁଡ଼ିକୁ ଗୋଟିଏ ଗୋଟିଏ ପଦରେ ପ୍ରକାଶ କର—
ଶୁଣିବାର ଇଚ୍ଛା, ଯାହା କରିବାକୁ ହେବ, ଆଘାତ ପାଇଥିବା, ଯାହା ପ୍ରୟୋଜନରେ ଲଗେ, ପୁରସ୍କାରକୁ ପ୍ରାପ୍ତ ।

---

## କୃଶା ଗୌତମୀ

ପୁତ୍ରଶୋକାତୁରା ତରୁଣୀ ଗୌତମୀ
ପୁତ୍ର ଶବ ଧରି ବହୁତ ଦୂରୁଁ
ଏକାକିନୀ ଶ୍ରାନ୍ତ ପଥକ୍ଳାନ୍ତ ହୋଇ
ଆସିଅଛି ଦୂର ଶ୍ରାବସ୍ତୀ ପୁରୁଁ ।
"ଏକମାତ୍ର ସୁତ ମୃତ ହେଲା, ତେଣୁ
ଘରଦ୍ୱାର କୁଳ ମାନ ବରଜି
ହେଲି ଉନ୍ମାଦିନୀ, ସରିଣର ନିଧି
ଦରିଦ୍ରତନ ଗଲା ମୋ ହଜି ।

କହ ହେ ସନ୍ନ୍ୟାସି, ମୋ ପ୍ରାଣର ଧନ
କେମନ୍ତେ ପାଇବି ହଜିଲା ନିଧି ?
କେଉଁ ପାପେ ମୋତେ ଏ ଅସହ୍ୟ ଶୋକ-
ବହ୍ନିରେ ନିହୁଲେ ଦାରୁଣ ବିଧି ?
ଖଣ୍ଡ ଖଣ୍ଡ ହୋଇ ଶବଦେହୁଁ ମାଂସ
ଗଲା ଯାଇଅଛି ଏ ଦୀର୍ଘ ପଥ,



[ ବୁଦ୍ଧଦେବ ]

ନାହିଁ ଶ୍ୱାସବାୟୁ, ହୃଦ୍‌ସ୍ପନ୍ଦନ ଗତ,
ବନ୍ଦ ଦନ୍ତ ରହି ଗଲାଣି ରଥ ।

'ତଥାପି ମୋହର ପରତେ ନ ହୁଏ
ମରିଅଛି ମୋର ପରାଣଧନ,
ପୀଡ଼ାର ଔଷଧ କ୍ଷଏସେ ହେ ଦେଇ
ରଖ ମମ ପ୍ରିୟସୁତ-ଜୀବନ ।"
କହନ୍ତି ସନ୍ନ୍ୟାସୀ, "ଅଗୋ ଉନ୍ମାଦିନି !
ଯାଅ ଜୈନବଣିକ ବୃନ୍ଦ ସକାଶେ,
ଯହିଁ ବଣିକେ ସ୍ୱର୍ଣ୍ଣଖ୍ୟାତହଣେ
ଅଛନ୍ତି ସେ ସୁଚ୍ଚିମିସ୍ୟା ଅବାସେ ।"
ଯାଇଣ ଯୁବତୀ ଶାକ୍ୟମୁନି କତ
ଶ୍ରୀଚରଣେ ତାଙ୍କ ପଡ଼ିଲା ଗଡ଼ି,
ନର କିବା ଛାର, ପାଷାଣ ହେଲେହେଁ
ତରଳିବ ଶୁଣି ତରୁଣୀ ରଡ଼ି—
"ତବ ଯଶ ଶୁଣି ବହୁ ଦୂର ପଥୁଁ
କରିଅଛି ଏଥି ମୁଁ ଅଗମନ,
ଦିଅ ପିତା, ସେହି ଔଷଧ, ଯା ଖାଇ
ଝଟିଣ ବସିବ ମୋ ପ୍ରାଣଧନ ।"
କହନ୍ତି ମୁନୀନ୍ଦ୍ର, "ଶାନ୍ତ ହୁଅ ମାତଃ,
ଅଣ ଯା ସର୍ଷପ-ମୁଷ୍ଟି ମୋ ପାଶ
ସେ ଘରୁ; ଯେ ଘରେ କେବେ ନ ମରିଛି
ନର ନାରୀ ଶିଶୁ ଦାସୀ ବା ଦାସ ।"
ଅତି ଅନନ୍ଦରେ ପୁନ ଶବ ଧରି
ଦଉଡ଼ିଲା ନାରୀ ସର୍ଷପ ଅଶେ;
ଯହିଁ ପୁଚ୍ଛେ ତହିଁ ଶୁଣେ ସେ ଦୁଃଖିନୀ
କେହି କେହି ଗଲେ ଗତ ଯମ-ଅବାସେ ।
ମାୟାମୁଗ୍ଧ ମନେ କର୍ମସୂତ୍ର-ଗୁଣେ
ପଡ଼ି ଜ୍ଞାନାଲୋକ ନାଶିଲା ଧ୍ୱାନ୍ତ;

ତେଜି ପୁତ୍ର ଶବ କହେ, "ଅମିତାଭ !
ଉଦ୍ଧରିଲ ମୋତେ ହେ ସିଦ୍ଧ ଶାନ୍ତ !
ଦିଅ ଶ୍ରୀଚରଣପ୍ରାନ୍ତେ ସ୍ଥାନ ମୋତେ;
ଶରଣ ମାଗଇ ଏ ଅଭାଗିନୀ;
ଆଶ୍ରା ଦିଅ ତବ ସୃଷ୍ଟ ଧର୍ମ-ସଂଘ-
ଗୃହ୍ୟାତଳେ, ହୁଏଁ ମୁଁ ସନ୍ନ୍ୟାସିନୀ !"
ତା ସବିନ ଶୁଣି ସବିନ ନୟନ୍ତେ
ନେହବିହ୍ୱଳ ତାର ନିରେଖି ବୁଦ୍ଧ
ଦୀକ୍ଷା ଦେଲେ ତାକୁ, ହେଲା ସେ ଭିକ୍ଷୁଣୀ,
ସକଳ କଳୁଷ ହେଲା ତା ଶୁଦ୍ଧ ।

## ପ୍ରଶ୍ନ

୧ । ବୁଦ୍ଧଦେବ ଗୌତମୀଙ୍କ ପୁତ୍ରର ପୁନର୍ଜୀବନପାଇଁ କଅଣ ଆବଶ୍ୟକ ବୋଲି କହିଲେ ? ତାଙ୍କର ଏପରି କହିବାର ଉଦ୍ଦେଶ୍ୟ କଅଣ ?

୨ । ଗୌତମୀ କି ସତ୍ୟ ଲାଭ କରି ଭିକ୍ଷୁଣୀ ହେଲେ ?

୩ । ସରଳ ଭାଷାରେ ବୁଝାଇ ଦିଅ—

(କ) ମାୟାମୁଗ୍ଧ ମନେ......ନାଶିଲା ଧ୍ୱାନ୍ତ ।

(ଖ) ନର ଜୀବା ଗୃହ......ତରୁଣୀ ରଣ୍ଡ ।

୪ । ପ୍ରକୃତିପ୍ରତ୍ୟୟ ଲେଖ—

ମୃତ, ସିଦ୍ଧ, ଶ୍ରାନ୍ତ, ପୁତ୍ର, ବଧୂ, ଏକାକିନୀ, ମୁଗ୍ଧ ।

୫ । ନିମ୍ନଲିଖିତ ଶବ୍ଦମାନଙ୍କର ବିପରୀତ ଲିଙ୍ଗରେ କି ଆକାର ହେବ ?

ଯୁବତୀ, ଭିକ୍ଷୁଣୀ, ଉନ୍ମାଦିନୀ, ନାରୀ, ଶିଷ୍ୟ, ପୁତ୍ର, ପିତା, ସନ୍ନ୍ୟାସୀ ।

---

## ଉତ୍କଳର ପ୍ରାକୃତିକ ବିଭବ

ପାଶ୍ଚାତ୍ୟ ସଭ୍ୟତା ବିକାଶ ଲାଭ କରିବାର ବହୁକାଳ ପୂର୍ବରୁ ଭାରତୀୟମାନେ ଲୌହ, ତାମ୍ର ଓ ଅଭ୍ର ପ୍ରଭୃତି ଖଣିଜ ସମ୍ପଦର ବ୍ୟବହାର ଜାଣିଥିଲେ । ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ ପାଶ୍ଚାତ୍ୟ ଜଗତରେ ଯେଉଁ 'ଶିଳ୍ପ-ବିପ୍ଳବ' ଦେଖା ଦେଲା, ତାହାର ପ୍ରଭାବ ବିଂଶ ଶତାବ୍ଦୀ ବେଳକୁ ଭାରତବର୍ଷରେ ପୂର୍ଣ୍ଣ ଅନୁଭୂତ ହେଲା । ଏହାର ପ୍ରଧାନ କାରଣ ହେଉଛି ଭାରତର ଆଧ୍ୟାତ୍ମିକ ମନୋବୃତ୍ତି ଏବଂ ରକ୍ଷଣଶୀଳ ପ୍ରକୃତି ।

ଭାରତ ମୁଖ୍ୟତଃ ଧର୍ମପ୍ରାଣ ଓ କୃଷିପ୍ରଧାନ ଦେଶ । ବହୁ ପୂର୍ବ କାଳରୁ ଭାରତୀୟମାନେ ଧାତବ ବିଦ୍ୟା ଜାଣିଥିଲେ ମଧ୍ୟ ଧର୍ମସମ୍ପୃକ୍ତ କାର୍ଯ୍ୟ ବ୍ୟତୀତ ଅନ୍ୟତ୍ର ତାହାର ବୈଷୟିକ ବିକାଶ ବା ପ୍ରସାର ହୋଇ ନ ଥିଲା; ତେଣୁ ସେକାଳର କୀର୍ତ୍ତିସ୍ତମ୍ଭ ଓ ଦେବାଳୟ ପ୍ରଭୃତିରେ ବ୍ୟବହୃତ ହୋଇଥିବା ଧାତବ ବସ୍ତୁମାନ ଲକ୍ଷ୍ୟ କରି ଆଜି ଆମ୍ଭେମାନେ ବିସ୍ମୟାନ୍ୱିତ ହେଉଁ । କୋଣାର୍କ ମନ୍ଦିରରେ ବ୍ୟବହୃତ ଲୌହନିର୍ମିତ କଡ଼ିର ବିଶାଳତା ଓ ଭାରବହନ ଶକ୍ତି ଆମ୍ଭମାନଙ୍କୁ ପ୍ରାଚୀନ ଲୌହଶିଳ୍ପର ଅନେକ କଥା ଜଣାଇଥାଏ । ସହସ୍ର-ସହସ୍ର ବର୍ଷ ପୂର୍ବେ ଆର୍ଯ୍ୟମାନଙ୍କ ଭାରତ ଆଗମନ ପୂର୍ବରୁ ମଧ୍ୟ ଏ ଦେଶର ତତ୍କାଳୀନ ଅଧିବାସୀ ଦ୍ରାବିଡ଼ମାନେ ବିବିଧ ଧାତୁଦ୍ରବ୍ୟର ବ୍ୟବହାର ଜାଣିଥିଲେ ବୋଲି ଇତିହାସ ସାକ୍ଷ୍ୟ ଦିଏ ।

ଲୌହର ଆବଶ୍ୟକତା ଆଧୁନିକ ଯୁଗରେ ସବୁଠାରୁ ବେଶୀ । ଖଣିରୁ ଲୌହ-ପ୍ରସ୍ତର ଉତ୍ତୋଳିତ ହୁଏ । ଅଗ୍ନ୍ୟୁତ୍ତାପଦ୍ୱାରା ଏହାକୁ ତରଳ କରି ଏଥିରୁ ଲୌହ ଓ ଲୌହରୁ ଇସ୍ପାତ ଲାଭ କରାଯାଏ । ଇସ୍ପାତ ଅତି କଠିନ ଓ ଦୀର୍ଘକାଳସ୍ଥାୟୀ । ବିହାର, ଓଡ଼ିଶା ଓ

ମାନ୍ଦ୍ରାଜର ପ୍ରଭୃତି ରାଜ୍ୟମାନଙ୍କରେ ବଡ଼ ବଡ଼ ଲୌହଖଣି ଅଛି । ଓଡ଼ିଶାର ମୟୂରଭଞ୍ଜ ଓ କେନ୍ଦୁଝରରେ ଲୌହଖଣିମାନ ଦେଖାଯାଏ । ମୟୂରଭଞ୍ଜର ବାଦାମ ପାହାଡ, ସୁଲଇପାଟ ଓ ଗୋରୁମହିଷାଣୀ ପ୍ରଭୃତି ଅଞ୍ଚଳରୁ ଲୌହ-ପ୍ରସ୍ତର ଉତ୍ତୋଳିତ ହୋଇ ସିଂହଭୂମି ଜିଲ୍ଲାସ୍ଥିତ ଟାଟାନଗରକୁ ପ୍ରେରିତ ହୁଏ । ଏଠାରେ ଏସିଆର ବୃହତ୍ତମ ଲୌହ କାରଖାନା ଅବସ୍ଥିତ । ଏଠାରୁ ଦୈନିକ ପ୍ରାୟ ତିନି ହଜାର ଟନ୍ ଲୌହ ଆମଦାନୀ କରା ଯାଇଥାଏ । ଉତ୍କଳରୁ ମିଳୁଥିବା ଲୌହ-ପ୍ରସ୍ତରର ବିଶେଷତ୍ୱ ଏହି



[ ଲୌହ-ପ୍ରସ୍ତର ତରଳାଇବା ଚୁଲ୍ଲୀ ]

ଯେ, ପୃଥିବୀର ଅନ୍ୟାନ୍ୟ ମିଳୁଥିବା ଲୌହ-ପ୍ରସ୍ତରରେ ଯେଉଁ ଅନୁପାତରେ ଲୌହ ମିଳେ, ଏଥିରୁ ତଦପେକ୍ଷା ଯଥେଷ୍ଟ ବେଶୀ ମିଳିଥାଏ । ସମ୍ପ୍ରତି କଟକ ଜିଲାର ସୁକିନ୍ଦା ଅଞ୍ଚଳରେ ଲୌହ-ପ୍ରସ୍ତର ଖଣିର ସନ୍ଧାନ ମିଳିଅଛି । ଟାଟାକମ୍ପାନୀ ସେଠାରେ

ଗୋଟିଏ କାରଖାନା ସ୍ଥାପନ କରିବାର ଉଦ୍ୟମ କରୁଅଛନ୍ତି । ଅତି ପ୍ରାଚୀନ କାଳରୁ ଏ ଦେଶର କମାରଜାତୀୟ ଲୋକେ ଲୌହରେ ଦାଅ, କଟୁରି, ଛୁରି ପ୍ରଭୃତି ପ୍ରୟୋଜନୀୟ ବସ୍ତୁ ନିର୍ମାଣ କରି ତାହାର ବିକ୍ରୟଲବ୍ଧ ଅର୍ଥରେ ଜୀବିକା ନିର୍ବାହ କରି ଆସୁଅଛନ୍ତି । ଲୌହର ଆବଶ୍ୟକତା ଆଧୁନିକ ସଭ୍ୟତାର ଅପରିହାର୍ଯ୍ୟ ଅଙ୍ଗ ହୋଇଥିବାରୁ ଏ ଯୁଗକୁ କେହି କେହି 'ଲୌହ-ଯୁଗ' ଆଖ୍ୟା ଦେଇଥାନ୍ତି ।



[ କୋଇଲାଖଣି ]

ପଥରକୋଇଲା ଏକ ଉଦ୍ଭିଜ୍ଜାତୀୟ ପଦାର୍ଥ । ଭୂତତ୍ତ୍ୱବିତ୍-ମାନଙ୍କ ଗବେଷଣାରୁ ଜଣାପଡ଼େ ଯେ, ଅତି ପ୍ରାଚୀନ ଯୁଗରେ ପୃଥିବୀପୃଷ୍ଠ ବୃକ୍ଷରାଜି ପ୍ରାକୃତିକ ବିପର୍ଯ୍ୟୟରେ ମୃତ୍ତିକାଦ୍ୱାରା

ଅଚ୍ଛାଦିତ ହୋଇ ପଡ଼ିଥିବାରୁ ପଥରକୋଇଲର ସୃଷ୍ଟି ହୋଇଅଛି । ଭୂଗର୍ଭସ୍ଥ ତାପ ଓ ନାନା ରାସାୟନିକ ପ୍ରକ୍ରିୟାଦ୍ୱାରା ସେହି ଉଦ୍ଭିଦଗୁଡ଼ିକରୁ ଅଧିକାଂଶ ଉଦଜାନ ଓ ଅମ୍ଳଜାନ ବାଷ୍ପରୂପେ ବହିର୍ଗତ ହୋଇଯିବାରୁ ସେଗୁଡ଼ିକ ଅଙ୍ଗାରରେ ପରିଣତ ହୋଇଥିଲା । କାଳକ୍ରମେ ଉପରସ୍ଥ ଶିଳାସ୍ତରର ଚାପ ହେତୁ ସେଗୁଡ଼ିକ ପଥରକୋଇଲାରେ ପରିଣତ ହୋଇଅଛି ।

କୋଇଲା ଜାଳିବାଦ୍ୱାରା ଜଳ ଷ୍ଟିମ୍ ବା ଜଳୀୟବାଷ୍ପରେ ପରିଣତ ହୁଏ । ଏହି ବାଷ୍ପ କଳ ପ୍ରଭୃତି ଚଳାଇବାରେ ବ୍ୟବହୃତ ହୋଇଥାଏ । ପଥରକୋଇଲାରୁ ବିଭିନ୍ନ ବୈଜ୍ଞାନିକ ପ୍ରକ୍ରିୟାଦ୍ୱାରା କୃତ୍ରିମ ରଙ୍ଗ, ଅଲକାତରା, ଶର୍କରାଠାରୁ ପଞ୍ଚଶତ ଗୁଣ ମଧୁର ସାକାରିନ୍, ପତଙ୍ଗ-ନାଶକ କାର୍ବଲିକ୍ ଏସିଡ୍ ଓ ଶସ୍ୟର ପୁଷ୍ଟିକାରକ ଆମୋନିଆ ପ୍ରଭୃତି ବାହାର କରାଯାଏ । ଭାରତବର୍ଷର ଦାମୋଦର ଉପତ୍ୟକା ଓ ମାନଭୂମ ଜିଲାର ଗିରିଡ଼ି, ଝରିଆ ପ୍ରଭୃତି ସ୍ଥାନରେ କୋଇଲାଖଣି ଅଛି । ବଙ୍ଗ ଦେଶର ରାଣୀଗଞ୍ଜ କୋଇଲା ଖଣି ପ୍ରସିଦ୍ଧ । ଓଡ଼ିଶାର ତାଳଚେରଠାରେ ଯେଉଁ କୋଇଲାଖଣି ଅଛି, ସେଥିରୁ ଉତ୍ତୋଳିତ ହେଉଥିବା କୋଇଲାର ଅଧିକାଂଶ ରେଲଇଞ୍ଜିନ୍ ଓ ଟାଟା ଲୌହ-କାରଖାନାରେ ବ୍ୟବହୃତ ହୁଏ ।

ଲୁହାରୁ ଇସ୍ପାତ ତିଆରି କରିବା ପାଇଁ ମାଙ୍ଗାନିଜ୍ ନାମକ ଗୋଟିଏ ଧାତୁର ବ୍ୟବହାର ଅପରିହାର୍ଯ୍ୟ । ଏହା ବ୍ୟତୀତ ବିଭିନ୍ନ ରାସାୟନିକ ଶିଳ୍ପ, ମୃଣ୍ମୟ ଶିଳ୍ପ, କାଚଶିଳ୍ପ ଓ ବୈଦ୍ୟୁତିକ ଶିଳ୍ପରେ ମାଙ୍ଗାନିଜ୍ ବ୍ୟବହୃତ ହୁଏ । ଓଡ଼ିଶାର ବଣେଇ, ବାମଣ୍ଡା, ଗାଙ୍ଗପୁର ଓ କେନ୍ଦୁଝର ପ୍ରଭୃତି ଅନେକ ସ୍ଥାନରେ ଏହି ମୂଲ୍ୟବାନ୍ ଧାତୁର ଖଣି ଅଛି; ମାତ୍ର ଏହାର ଉତ୍ତୋଳନ ଓ ବ୍ୟବହାର ଲାଗି ଏପର୍ଯ୍ୟନ୍ତ ଉପଯୁକ୍ତ ବ୍ୟବସ୍ଥା ହୋଇ ନାହିଁ ।

ଯୁଦ୍ଧ ଜାହାଜ ଓ ବାୟୁଯାନ ପ୍ରଭୃତି ନିର୍ମାଣ କରିବାରେ ବକ୍‌ସାଇଟ୍ ଅବଶ୍ୟକ ହୋଇଥାଏ । ଓଡ଼ିଶାର କୋରାପୁଟ ଓ କଳାହାଣ୍ଡି ଜିଲ୍ଲାରୁ ଏହା ବହୁ ପରିମାଣରେ ଆମଦାନୀ କରି ଯାଇଥାଏ । ସିଂହଭୂମି ଜିଲାର ମୁଶାବଣି ଓ ଷଢ଼େଇକଲାରେ ଯଥାକ୍ରମେ ତମ୍ବା ଓ ଅସ୍‌ବେଷ୍ଟସ୍ କାରଖାନା ଅଛି । ଅସ୍‌ବେଷ୍ଟସ୍ ଅଗ୍ନି ଦ୍ୱାରା ଦଗ୍ଧ ହୁଏ ନାହିଁ । ଏଥିରୁ ଟାଇଲ୍, ବସ୍ତ୍ର ଓ ରଜ୍ଜୁ ପ୍ରଭୃତି ନିର୍ମିତ ହୁଏ । ଆଜିକାଲି ଗୃହନିର୍ମାଣରେ ଏହାର ବହୁଳ ବ୍ୟବହାର ଦେଖାଯାଏ ।

ଗ୍ରାଫାଇଟ୍ ଅନ୍ୟ ଗୋଟିଏ ଖଣିଜ ପଦାର୍ଥ । ରଞ୍ଜନ ଓ ଉପଲେପନ ନିମିତ୍ତ ଏହା ସାଧାରଣତଃ ବ୍ୟବହୃତ ହୋଇଥାଏ । ଓଡ଼ିଶାର କେତେକ ସ୍ଥାନରୁ ଗ୍ରାଫାଇଟ୍ ମିଳେ; କିନ୍ତୁ ଏପର୍ଯ୍ୟନ୍ତ ଏହାର ଉତ୍ତୋଳନ ଓ ବ୍ୟବହାର ଲାଗି ସୁବ୍ୟବସ୍ଥା ହୋଇ ନାହିଁ ।

ଲ୍ୟାମ୍ପର ଚିମ୍ନି ଓ କେତେକ ଔଷଧ ପ୍ରସ୍ତୁତ କରିବାରେ ଅଭ୍ର ବ୍ୟବହୃତ ହୁଏ । ଅଭ୍ର ସାହାଯ୍ୟରେ ସୁନ୍ଦର କାରୁକାର୍ଯ୍ୟଖଚିତ ଫୁଲ୍, ବିମାନ ପ୍ରଭୃତି ମଧ୍ୟ ନିର୍ମିତ ହୁଏ । ଓଡ଼ିଶାର ସମ୍ବଲପୁର ଓ ଅନ୍ୟ କେତେକ ସ୍ଥାନରେ ଅଭ୍ର ଯଥେଷ୍ଟ ପରିମାଣରେ ରହିଅଛି । ସେସବୁର ଉପଯୋଗ କରାଗଲେ ଓଡ଼ିଶାର ଆର୍ଥିକ ଉନ୍ନତ ହେବା ନିଃସନ୍ଦେହ ।

ଖଣିଜ ସମ୍ପଦ କଥା ଛାଡ଼ିଦେଇ ବନ୍ୟ ସମ୍ପଦପ୍ରତି ଦୃଷ୍ଟି ଦେଲେ ଜଣାଯାଏ ଯେ, ଓଡ଼ିଶା ସେଥିରେ ମଧ୍ୟ ଅଭାବଗ୍ରସ୍ତ ନୁହେଁ । ଓଡ଼ିଶାରେ ବିସ୍ତୀର୍ଣ୍ଣ ଅରଣ୍ୟ ଅଛି । ତେଣୁ ଶାଳ, ପିଆଶାଳ ପ୍ରଭୃତି ମୂଲ୍ୟବାନ୍ କାଠ ଯଥେଷ୍ଟ ପରିମାଣରେ ମିଳିଥାଏ । କାଗଜତିଆରି ଲାଗି ବାଉଁଶ ଓ ବାବୁଲ ଘାସ ବ୍ୟବହାର କରାଯାଏ । ଓଡ଼ିଶାର ଅରଣ୍ୟଜାତ ବାଉଁଶ ଓ

ବାବୁଲ ଘାସଦ୍ୱାରା ବ୍ରଜରାଜନଗରର କାଗଜକଳ ପ୍ରଚୁର କାଗଜ ଉତ୍ପାଦନ କରେ ।

ଓଡ଼ିଶାର ଜଳପ୍ରପାତଗୁଡ଼ିକରୁ ବୈଦ୍ୟୁତିକ ଶକ୍ତି ଉତ୍ପାଦନ କରାଯାଇପାରେ । ବାମଣ୍ଡାର ପୂର୍ବତନ ରାଜା ସାର୍ ବାସୁଦେବ ସୁଡ଼ଳଦେବ ନିଜ ରାଜ୍ୟର ଏକ ଜଳପ୍ରପାତରୁ ବୈଦ୍ୟୁତିକ ଶକ୍ତି ଉତ୍ପାଦନ କରାଇ ବ୍ୟବହାରରେ ଲଗାଇଥିଲେ । ଓଡ଼ିଶାର ଦକ୍ଷିଣ ସୀମାରେ ଅବସ୍ଥିତ ମାଛକୁଣ୍ଡ ନଦୀର ଡୁଡୁମା ଜଳପ୍ରପାତରୁ ବୈଦ୍ୟୁତିକ ଶକ୍ତି ଉତ୍ପାଦନ କରିବା ନିମିତ୍ତ ବର୍ତ୍ତମାନ ଉଦ୍ୟମ ଚାଲିଅଛି । ମହାନଦୀର ବିପୁଳ ଜଳରାଶିକୁ ଗଚ୍ଛିତ ରଖି ଜଳସେଚନ କାର୍ଯ୍ୟ ସଙ୍ଗେ ବୈଦ୍ୟୁତିକ ଶକ୍ତି ଉତ୍ପାଦନ କରିବା ଅଭିପ୍ରାୟରେ ସମ୍ବଲପୁରର ହୀରାକୁଦଠାରେ ଗୋଟିଏ ପ୍ରକାଣ୍ଡ ଜଳଭଣ୍ଡାର ପ୍ରତିଷ୍ଠା କରାଯାଉଅଛି ।

ଚିଲିକା ଓ ଅଂଶୁପା ହ୍ରଦଦ୍ୱୟ ଉତ୍କଳଜନନୀଙ୍କର ଦୁଇଟି ବହୁମୂଲ୍ୟ ଉଜ୍ଜ୍ୱଳ ରତ୍ନ ସଦୃଶ । 'ମରାଳମାଳିନୀ ନୀଳାମ୍ବୁ' ଚିଲିକା କବିଚକ୍ଷୁରେ 'ଶୋକପାଶୋରା ଅପସରାଭୁବନ' ରୂପେ ପ୍ରତିଭାତ ହୋଇ ସୌନ୍ଦର୍ଯ୍ୟ-ପିପାସା ଦୂର କରିବା ସଙ୍ଗେ ସଙ୍ଗେ ସହସ୍ର ସହସ୍ର ଉତ୍କଳୀୟଙ୍କ ଜୀବିକାର୍ଜ୍ଜନର ଅସରନ୍ତି ଭଣ୍ଡାରରୂପେ ବିଦ୍ୟମାନ ରହିଅଛି । ଏଥିରୁ ମତ୍ସ୍ୟ ଓ ଲବଣ ସଂଗ୍ରହ କରିବା ବହୁ ଲୋକଙ୍କର ଏକମାତ୍ର ଜୀବନୋପାୟ । ଅଂଶୁପା ହ୍ରଦ ମଧ୍ୟ ଯେପରି ପ୍ରାକୃତିକ ଦୃଶ୍ୟରେ ରମଣୀୟ, ସେହିପରି ତୀରବାସୀ-ମାନଙ୍କର ଜୀବିକାର୍ଜ୍ଜନର ସହାୟକ ।

## ପ୍ରଶ୍ନ

୧ । ଉତ୍କଳରେ କି କି ଖଣିଜ ଦ୍ରବ୍ୟ ମିଳେ ? ସେଗୁଡ଼ିକର କିପ୍ରକାର ବ୍ୟବହାର ହେଉଅଛି ?

୨ । ବନ୍ୟ ସମ୍ପଦର ଉପଯୋଗ ନିମନ୍ତେ ଜଙ୍ଗଲରେ କି ବ୍ୟବସ୍ଥା କରାଯାଇଅଛି ଓ ଆଉ କଅଣ କରାଯାଇପାରେ ?

୩ । ସମୁଦ୍ର, ନଦୀ ଓ ହ୍ରଦ ପ୍ରକୃତି କାହିଁକି ଜାତୀୟ ବିଭବରୂପେ ପରିଗଣିତ ?

୪ । ସମୁଦ୍ରତଟରେ ଥିବାରୁ ଓଡ଼ିଶାର କି ସୁବିଧା ଅଛି ?

୫ । ସହଜ ଭାଷାରେ ପ୍ରକାଶ କର—

(କ) ଚିଲିକା କବିଚିତ୍ତରେ···ଭଣ୍ଡାରରୂପେ ବିଦ୍ୟମାନ ରହିଅଛି ।

(ଖ) ଚିଲିକା ଓ ଅଂଶୁପା ହ୍ରଦଦ୍ୱୟ···ରତ୍ନ ସଦୃଶ ।

୬ । ନିମ୍ନଲିଖିତ ବାକ୍ୟ ଦୁଇଟିକୁ ଖଣ୍ଡବାକ୍ୟରେ ବିଭକ୍ତ କରି ପରସ୍ପରର ସମ୍ବନ୍ଧ ପ୍ରଦର୍ଶନ କର—

(କ) ଖ୍ରୀଷ୍ଟୀୟ ଅଷ୍ଟାଦଶ······ପୂର୍ଣ୍ଣ ଅନୁଭୂତ ହେଲା ।

(ଖ) ବହୁ ପୂର୍ବକାଳରୁ··· ···ବିସ୍ମୟାନ୍ୱିତ ହେଉଁ ।

---

## ରାଜା ରାମମୋହନ ରାୟ

ବଙ୍ଗଦେଶର ରାଧାନଗର ନାମକ ସ୍ଥାନରେ ୧୭୭୪ ଖ୍ରୀଷ୍ଟାବ୍ଦରେ ଏକ ବ୍ରାହ୍ମଣ ପରିବାରରେ ରାମମୋହନ ଭୂମିଷ୍ଠ ହୋଇଥିଲେ । ତାଙ୍କର ପିତା ରାମକାନ୍ତ ରାୟ ଜଣେ ପ୍ରତପଶାଳୀ ବଣିଷ୍ଠ ଜମିଦାର ଥିଲେ । ମାତା ମଧ୍ୟ ଉଚ୍ଚକୁଳସମ୍ଭୂତା ଓ ଅତି ଧର୍ମପରାୟଣା ଥିଲେ । ସ୍ଥୂଳତଃ ରାମମୋହନଙ୍କର କୌଳିକ ଆଭିଜାତ୍ୟ ଯଥେଷ୍ଟ ଥିଲା ।

ସେସମୟରେ ବଙ୍ଗଦେଶରେ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ସ୍ରୋତ ଧୀରେ ଧୀରେ ପ୍ରବେଶ କରୁଥିଲେହେଁ ସରକାରୀ କଚେରିମାନଙ୍କରୁ ଆରବୀ ଓ ପାର୍ଶୀ ଭାଷା ଲୋପ ପାଇ ନ ଥିଲା । ରାଜକର୍ମପ୍ରାପ୍ତି ନିମନ୍ତେ ଉକ୍ତ ଦୁଇ ଭାଷାର ଶିକ୍ଷା ସେତେବେଳେ

ମଧ୍ୟ ଅପରିହାର୍ଯ୍ୟ ବୋଲି ବିବେଚିତ ହେଉଥିଲା । ତେଣୁ ଦଶ ବର୍ଷ ବୟଃକ୍ରମକାଳରେ ରାମମୋହନ ଅରବୀ ଓ ପାର୍ଶୀ ଶିଖିବାପାଇଁ ବିହାରର ପାଟନା ସହରକୁ ପ୍ରେରିତ ହେଲେ ଏବଂ ଅଳ୍ପ ସମୟ-ମଧ୍ୟରେ ତହିଁରେ କୃତିତ୍ୱ ଅର୍ଜନ କଲେ ।

ରାମମୋହନ ତହିଁରେ କୋରାଣ ଗ୍ରନ୍ଥ ଅଧ୍ୟୟନ କରି ତହିଁରୁ ମୁସଲମାନ ଧର୍ମର କେତେକ ମୌଳିକ ତଥ୍ୟ ଉପଲବ୍ଧି କରି ପାରିଲେ । ଏହାର କେତେକ ବର୍ଷ ପରେ ସେ ବାରାଣସୀ ଯାତ୍ରା କଲେ ଏବଂ ସେଠାରେ ସଂସ୍କୃତ ଶିକ୍ଷା କରି ହିନ୍ଦୁ ଧର୍ମର ଗୂଢ଼ ତତ୍ତ୍ୱମାନ ହୃଦୟଙ୍ଗମ କରିବାକୁ ଚେଷ୍ଟା କଲେ । ଏଥିରେ ତାଙ୍କର ଧର୍ମଜ୍ଞାନ ଯଥେଷ୍ଟ ବୃଦ୍ଧିପ୍ରାପ୍ତ ହେଲା ସତ୍ୟ; କିନ୍ତୁ ଧର୍ମନାମରେ ନାନା ଅବୈଧ କୁସଂସ୍କାର ହିନ୍ଦୁ ସମାଜକୁ ଗ୍ରାସି ରହି-ଥିବାର ଦେଖି ସେ ଅତୀବ ମର୍ମାହତ ହେଲେ । ଏହାହିଁ ହେଲା ତାଙ୍କ ଜୀବନରେ ସ୍ୱାଧୀନ ପ୍ରେରଣାର ପ୍ରଥମ ସ୍ଫୁରଣ ।



[ ରାଜା ରାମମୋହନ ରାୟ ]

ଷୋଳ ବର୍ଷ ବୟସରେ ରାମମୋହନ ସ୍ୱୀୟ ଜନ୍ମସ୍ଥାନକୁ ଫେରିଆସିଲେ । ନିଜ ପରିବାରରେ ତଥା ସମାଜରେ ପ୍ରଚଳିତ

ଚାରାଚରିତ କୁପ୍ରଥାଗୁଡ଼ିକୁ ଏଣିକି ସେ ଅଜ ପୂର୍ବପରି ଗ୍ରହଣ କରି-ପାରିଲେ ନାହିଁ । ତାଙ୍କର ଚିନ୍ତାଶୀଳ ସ୍ୱାଧୀନ ମନ ମୂର୍ତ୍ତିପୂଜାର ଅଯୌକ୍ତିକତା ପ୍ରତିପାଦିତ କରିବାକୁ ବ୍ୟଗ୍ର ହୋଇପଡ଼ିଲା । ଅଳ୍ପ କାଳମଧ୍ୟରେ ସେ ତତ୍‌ସମ୍ବନ୍ଧରେ ଖଣ୍ଡିଏ ପୁସ୍ତିକା ପ୍ରଣୟନ କରି ନିଜ ମତବାଦ ପ୍ରଚାର କଲେ । ପୁତ୍ରର ଏତାଦୃଶ ସମାଜ-ବିରୋଧୀ କାର୍ଯ୍ୟକଳାପ ଆଚାରପ୍ରବଣ ନୈଷ୍ଠିକ ପିତାଙ୍କ ହୃଦୟରେ ଦାରୁଣ ଆଘାତ ଦେଲା । ଫଳରେ ସେ ଅତ୍ୟନ୍ତ ବିରକ୍ତ ହୋଇ ରାମମୋହନଙ୍କୁ ଗୃହରୁ ବିତାଡ଼ିତ କରିଦେବାକୁ ବାଧ୍ୟ ହେଲେ ।

ବିଧିର ବିଧାନ ବିଚିତ୍ର—ଅଭିଶାପ ଆଶୀର୍ବାଦରେ ପରିଣତ ହେଲା । ଗୃହତ୍ୟାଗୀ ରାମମୋହନ ଭାରତର ନାନା ସ୍ଥାନ ତଥା ତିବ୍ବତ ଭ୍ରମଣ କରି ବିଭିନ୍ନ ଧର୍ମ ଓ ସମାଜ ସମ୍ବନ୍ଧରେ ବହୁ ମୂଲ୍ୟବାନ୍ ଜ୍ଞାନ ଆହରଣପୂର୍ବକ ବାଇଶ ବର୍ଷ ବୟସରେ ଜନ୍ମ-ସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ । ଏହି ଅବସରରେ ସେ ଇଂରେଜୀ ଶିକ୍ଷାରେ ଆତ୍ମନିୟୋଗ କରିବାକୁ ଲାଗିଲେ । ଦୀର୍ଘ ଭ୍ରମଣ ଫଳରେ ତାଙ୍କର ଦୃଢ଼ ବିଶ୍ୱାସ ଜନ୍ମିଥିଲା ଯେ, ଇଂରେଜ ଶାସନର ଅର୍ଥ ଭାରତର ପରାଧୀନତା; କିନ୍ତୁ ଭାରତର ଭବିଷ୍ୟତ୍ ଉନ୍ନତିର ସ୍ୱପ୍ନ ଦେଖିବାକୁ ହେଲେ ଏହି ପରାଧୀନତାକୁ କିଛି କାଳପାଇଁ ନତମସ୍ତକରେ ଗ୍ରହଣ କରିବା ବାଂଛିତ, ଗତ୍ୟନ୍ତର ନାହିଁ ।

ରାମମୋହନ ଇଂରେଜୀ ଶିକ୍ଷା ସଙ୍ଗେ ସଙ୍ଗେ ସାମାଜିକ କୁସଂସ୍କାର ସହିତ ଯୁଦ୍ଧ କରିବାକୁ ନିର୍ଭୀକ ବୀରପରି ପ୍ରତିଜ୍ଞାବଦ୍ଧ ହେଲେ । ହିନ୍ଦୁ ସମାଜରେ ପ୍ରଚଳିତ ସତୀଦାହ ପ୍ରଥାକୁ ସେ ନିତାନ୍ତ ବର୍ବରୋଚିତ ମୂଢ଼ତା ବୋଲି ମନେ କରୁଥିଲେ । ତେଣୁ ତାହାର ନିରୋଧପାଇଁ ସେ ତୀବ୍ର ଆନ୍ଦୋଳନ ଚଳାଇଲେ ଏବଂ ତାହା ଫଳରେ ଧର୍ମଧ୍ୱଜାଧାରୀ ସାମାଜିକ ନେତୃବର୍ଗଙ୍କର ଘୋର ଶତ୍ରୁରୂପେ ପରିଗଣିତ ହେଲେ ।

୧୮୦୦ ଠାରୁ ୧୮୧୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାମମୋହନ କଲେକ୍ଟରର ଓ ଜଜ୍ ସାହେବଙ୍କ ଅଧୀନରେ ଦେବାନ କାର୍ଯ୍ୟ କରିଥିଲେ । ୧୮୧୪ ଖ୍ରୀଷ୍ଟାବ୍ଦରେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରି ସେ କଲିକତାରେ ଅବସ୍ଥାନ କଲେ ଏବଂ ସମାଜ-ସଂସ୍କାର ତଥା ଧର୍ମଧାରା ପରିବର୍ତ୍ତନରେ ମନଃପ୍ରାଣ ଢାଳିଦେଲେ । ଧର୍ମ ସମ୍ବନ୍ଧରେ ପୂର୍ଣ୍ଣ ଜ୍ଞାନ ଲାଭ କରିବା ଉଦ୍ଦେଶ୍ୟରେ ସେ ବିଭିନ୍ନ ଧର୍ମର ସାରଗ୍ରନ୍ଥମାନ ଆଲୋଚନା କରିବାକୁ ଲାଗିଲେ ଏବଂ ପିତାଙ୍କ ମୃତ୍ୟୁପରେ ପୌତ୍ତଳିକତାର ଅଳୀକତା ବିଷୟରେ ସୁଯୁକ୍ତିସମ୍ମତ ଖଣ୍ଡିଏ ପୁସ୍ତକ ପାର୍ଶୀ ଭାଷାରେ ଲେଖି ପ୍ରକାଶ କଲେ । ସେଥିଯୋଗୁ ତଥାକଥିତ ଧର୍ମପଣ୍ଡାମାନଙ୍କର ବିଷଦୃଷ୍ଟି ତାଙ୍କପ୍ରତି ଅଧିକ ପ୍ରଖର ହୋଇଉଠିଲା ।

ମହାପୁରୁଷ ଯିଶୁ ଖ୍ରୀଷ୍ଟଙ୍କ ନୈତିକ ଉପଦେଶାବଳୀର ମହତ୍ତ୍ୱ-ପ୍ରତି ରାମମୋହନଙ୍କର ଗଭୀର ଶ୍ରଦ୍ଧା ଥିଲା । ତେଣୁ ସେ ୧୮୨୦ ଖ୍ରୀଷ୍ଟାବ୍ଦରେ ଉକ୍ତ ଉପଦେଶମାଳାକୁ ଇଂରେଜୀ, ବଙ୍ଗଳା ଓ ସଂସ୍କୃତ ଭାଷାରେ ପୁସ୍ତକାକାରରେ ସଙ୍କଳନ କଲେ । ଖ୍ରୀଷ୍ଟିଆନ ଧର୍ମମତର ଆଲୋଚନା ତାଙ୍କର ଏଥିରେ ଆଦୌ ଲକ୍ଷ୍ୟ ନ ଥିଲା—କେବଳ ମହାତ୍ମା ଯିଶୁ ଖ୍ରୀଷ୍ଟଙ୍କର ଅମୂଲ୍ୟ ଧର୍ମୋପଦେଶପ୍ରତି ଜନସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରିବାହିଁ ଉଦ୍ଦେଶ୍ୟ ଥିଲା । କିନ୍ତୁ ଖ୍ରୀଷ୍ଟିଆନ ପାଦ୍ରୀମାନେ ଏହି ଉଦ୍ଦେଶ୍ୟ ବୁଝି ନ ପାରି ବୃଥା ତାଙ୍କର ବିରୋଧୀ ହୋଇ ଉଠିଲେ । ଏହି ଅବାଞ୍ଛିନୀୟ ପରିସ୍ଥିତିର ନିରାକରଣପାଇଁ ରାମମୋହନ ହିବ୍ରୁ ଓ ଗ୍ରୀକ୍ ଭାଷାରେ ଲିଖିତ ମୂଳ ବାଇବେଲ୍ ଗ୍ରନ୍ଥ ପଢ଼ି ପାଦ୍ରୀମାନଙ୍କର ଭ୍ରାନ୍ତ ଧାରଣା ଦୂର କରିବାକୁ ଚେଷ୍ଟା କଲେ । ଏଥିପାଇଁ ତାଙ୍କୁ ପାଦ୍ରୀମାନଙ୍କ ସହିତ ବହୁ ବାଦାନୁବାଦ କରିବାକୁ ପଡ଼ିଥିଲା ।

କିଛି କାଳ ପରେ ରାମମୋହନଙ୍କ ପ୍ରବର୍ତ୍ତିତ ନବ ଧର୍ମନୀତି କେତେକ ଶିକ୍ଷିତ ବ୍ୟକ୍ତିଙ୍କର ସମର୍ଥନ ଲାଭ କଲା । ସେହି କେତେ ଜଣ ବନ୍ଧୁ ମୂର୍ତ୍ତିପୂଜାର ବିରୋଧପୂର୍ବକ ଏକେଶ୍ୱରବାଦ ପ୍ରଚାର କଲେ ଏବଂ ରାମମୋହନଙ୍କ ଗୃହରେ ସମବେତ ହୋଇ ଉପାସନା କରିବାକୁ ଲାଗିଲେ । ସେମାନେ ପରସ୍ପର ସହଯୋଗ ଓ ଯତ୍ନରେ 'ଆତ୍ମୀୟ ସଭା' ନାମକ ଏକ ସମାଜ ଗଠନ କରି ପିତ୍ତଳାପୂଜାର ନିରର୍ଥକତା ପ୍ରଚାରରେ ବ୍ରତୀ ହେଲେ । ଏହି ଆତ୍ମୀୟ ସଭାର ନାମ ୧୮୨୮ ଖ୍ରୀଷ୍ଟାବ୍ଦଠାରୁ 'ବ୍ରାହ୍ମସମାଜ' ନାମରେ ପରିଣତ ହେଲା ଏବଂ ତାହା ଏକ ନବନିର୍ମିତ ସ୍ୱତନ୍ତ୍ର ଗୃହରେ ପ୍ରତିଷ୍ଠିତ ହେଲା । ଏହିରୂପେ ମନସ୍ୱୀ ରାମମୋହନ ଆଧୁନିକ ବ୍ରାହ୍ମଧର୍ମର ମୂଳପତ୍ତନ ଆରମ୍ଭ କରିଥିଲେ ।

ସେ ସତୀଦାହ ପ୍ରଥାରୂପ ସାମାଜିକ କଳଙ୍କ ବିରୋଧରେ ଆନ୍ଦୋଳନ କରିବା କଥା ପୂର୍ବରୁ ବର୍ଣ୍ଣିତ ହୋଇଅଛି । ୧୮୧୮ ମସିହାରେ ସେ ତତ୍‌ସମ୍ବନ୍ଧରେ ଖଣ୍ଡିଏ ପୁସ୍ତିକା ପ୍ରକାଶ କରିଥିଲେ ଏବଂ ଉକ୍ତ ଘୃଣ୍ୟ ପ୍ରଥାର ନିବାରଣ ପାଇଁ ସରକାରଙ୍କୁ ବାରମ୍ବାର ଅନୁରୋଧ କରି ଆସୁଥିଲେ । ଦୀର୍ଘ ଦଶ ବର୍ଷବ୍ୟାପୀ ଅଦମ୍ୟ ଉଦ୍ୟମ ଓ ଅବିଶ୍ରାନ୍ତ ପରିଶ୍ରମ ଫଳରେ ତାଙ୍କ କାର୍ଯ୍ୟ ଫଳପ୍ରସୂ ହେଲା । ତତ୍‌କାଳୀନ ବଡ଼ଲାଟ ଲର୍ଡ଼ ଉଇଲିୟମ୍ ବେଣ୍ଟିଙ୍କ୍ ୧୮୨୯ ମସିହାରେ ଆଇନ ପ୍ରଣୟନ କରି ସତୀଦାହପ୍ରଥା ରହିତ କଲେ । ସେହି ଦିନଠାରୁ ସତୀଦାହ ଆଇନ ଅନୁସାରେ ଦଣ୍ଡନୀୟ ଅପରାଧରୂପେ ପରିଗଣିତ ହେଲା । ପୁଣ୍ୟାତ୍ମା ରାମମୋହନଙ୍କର ସଂସ୍କାରପ୍ରବଣ ଦେଶହିତୈଷିତା ଯୋଗୁ ଶତ ଶତ ନିରପରାଧା ହିନ୍ଦୁମହିଳା ବାଧ୍ୟତାମୂଳକ ଆତ୍ମବଳିରୁ ଚିରକାଳପାଇଁ ନିଷ୍କୃତି ପାଇଲେ ।

ଶିକ୍ଷାସଂକ୍ରାନ୍ତ ସଂସ୍କାର ଦିଗରେ ରାମମୋହନଙ୍କର ଦାନ ଚିରସ୍ମରଣୀୟ ହୋଇ ରହିବ । ବହୁବିଧ ଭାରତୀୟ ଓ ପାଶ୍ଚାତ୍ୟ ଭାଷା, ବିଶେଷତଃ ପାର୍ଶୀ, ଆରବୀ, ସଂସ୍କୃତ ଓ ଇଂରେଜୀ ଭାଷାରେ ସେ ଅତି ପ୍ରବୀଣ ଥିଲେ । ହୃଦୟର ସଂକୀର୍ଣ୍ଣତା ପରିତ୍ୟାଗ କରି ସ୍ୱାଧୀନ ଭାବରେ ସତ୍ୟର ସନ୍ଧାନ କରିବା କେବଳ ପାଶ୍ଚାତ୍ୟ ଭାଷାଦ୍ୱାରା ସମ୍ଭବପର ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ତେଣୁ ସେ ଭାରତରେ ଇଂରେଜୀ ଶିକ୍ଷାର ବିସ୍ତାର ଲାଗି ଅପ୍ରାଣ ଚେଷ୍ଟା କଲେ । ସେସମୟରେ କେବଳ ଭାରତୀୟ ପଣ୍ଡିତମାନେ କାହିଁକି, ବହୁ ଖ୍ୟାତନାମା ଇଂରେଜ ଶାସକ ମଧ୍ୟ ଭାରତରେ ସଂସ୍କୃତ ଓ ପାର୍ଶୀ ଭାଷା ପ୍ରଚାରର ପକ୍ଷପାତୀ ଥିଲେ । କିନ୍ତୁ ରାମମୋହନ ଓ କେତେ ଜଣ ଇଂରେଜ କର୍ମଚାରୀ ଇଂରେଜୀ ଶିକ୍ଷାଉପରେହିଁ ଭାରତର ସର୍ବାଙ୍ଗୀନ ଉନ୍ନତି ନିର୍ଭର କରେ ବୋଲି ମତ ପୋଷଣ କରିଥିଲେ । ଯାହା ହେଉ, ପରିଶେଷରେ ଇଂରେଜ ସରକାର ଭାରତରେ ଇଂରେଜୀ ଶିକ୍ଷାର ପ୍ରଚାର କରାଇବାକୁ ସିଦ୍ଧାନ୍ତ କରିଥିଲେ ।

କଲିକତାରେ ଗୋଟିଏ କଲେଜ ସ୍ଥାପନ କରିବାରେ ଖ୍ରୀଷ୍ଟିୟାନ୍ ପାଦ୍ରୀ ଆଲେକ୍‌ଜାଣ୍ଡର୍ ଡଫ୍‌ଙ୍କୁ ରାମମୋହନ ଯଥେଷ୍ଟ ସାହାଯ୍ୟ ଓ ଉତ୍ସାହ ଦେଇଥିଲେ । ଭାରତୀୟ ଶିକ୍ଷାପଦ୍ଧତିର ନିର୍ଣ୍ଣୟୀକରଣରେ ମ୍ୟାକଲେ ଓ ବେଣ୍ଟିଙ୍କଙ୍କ ନାମ ସହିତ ରାମମୋହନ ରାୟଙ୍କ ନାମ ଚିରକାଳ ଯେ ସଂଯୁକ୍ତ ହୋଇ ରହିବ, ଏଥିରେ ସନ୍ଦେହ ନାହିଁ ।

ରାମମୋହନଙ୍କ ରକ୍ଷଣଶୀଳା ମାତା ପୁତ୍ରର ବୈପ୍ଳବିକ ମନୋବୃତ୍ତିକୁ ଅନୁମୋଦନ କରିପାରୁ ନ ଥିଲେ । ତେଣୁ ହିନ୍ଦୁ ସମାଜର ରୀତିନୀତି ସମ୍ବନ୍ଧରେ ମାତାପୁତ୍ରଙ୍କ ମଧ୍ୟରେ ପ୍ରାୟଶଃ

ବିରୋଧ କରୁଥିଲେ । ମାତ୍ର ପରିଣତ ବୟସରେ ମାତା ସେହି ବିରୋଧ ଭାବଠାରୁ ଦୂରରେ ରହିବାପାଇଁ ଶ୍ରୀକ୍ଷେତ୍ରକୁ ଚାଲିଯାଇ ସେହିଠାରେ ଶେଷ ଜୀବନ କଟାଇଥିଲେ ।

ଇଂରେଜମାନଙ୍କ ରୀତିନୀତି, ଧର୍ମକର୍ମ, ରାଜନୀତି, ଅର୍ଥନୀତି ପ୍ରଭୃତି ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଓ ଅନୁଭୂତି ଲାଭ କରିବାପାଇଁ ବହୁ କାଳରୁ ରାମମୋହନଙ୍କର ଅଭିଳାଷ ଥିଲା; କିନ୍ତୁ ସେଥିପାଇଁ ଏପର୍ଯ୍ୟନ୍ତ ସୁଯୋଗ ବା ସୁବିଧା ଘଟି ନ ଥିଲା । ଦୈବବଶତଃ ଦିଲ୍ଲୀର ତତ୍କାଳୀନ ନାମମାତ୍ର ମୋଗଲ ବାଦଶା ତାଙ୍କର କେତେକ ଅଭିଯୋଗ ବିଲାତ ପାର୍ଲିମେଣ୍ଟରେ ଜଣାଇବାପାଇଁ ରାମମୋହନଙ୍କୁ ଅନୁରୋଧ କଲେ । ସେ ତାଙ୍କୁ ସମ୍ମାନସୂଚକ ରାଜା ଉପାଧି ଦେଇ ଓ ରାଜଦୂତରୂପେ ନିଯୁକ୍ତ କରି ବିଲାତକୁ ପ୍ରେରଣ କଲେ ।

ରାମମୋହନ ୧୮୩୦ ଖ୍ରୀଷ୍ଟାବ୍ଦରେ ବିଲାତ ଯାତ୍ରା କରି ସେଠାର ପଦସ୍ଥ ବ୍ୟକ୍ତିମାନଙ୍କଠାରୁ ଯଥେଷ୍ଟ ସମ୍ମାନ ଓ ସମ୍ବର୍ଦ୍ଧନା ଲାଭ କରିଥିଲେ ଏବଂ ପାର୍ଲିମେଣ୍ଟର ବିଭିନ୍ନ କମିଟିରେ ଭାରତର ଅଭାବ ଅଭିଯୋଗ ପୁଙ୍ଖାନୁପୁଙ୍ଖଭାବରେ ଉପସ୍ଥାପିତ କରିଥିଲେ । କିନ୍ତୁ ଦୁର୍ଭାଗ୍ୟର କଥା, ତାଙ୍କର କାର୍ଯ୍ୟ ପରିସମାପ୍ତ ନ ହେଉଣୁ ବିଧି-ନିର୍ଦ୍ଦେଶରେ ହଠାତ୍ ତାଙ୍କ 'ଜୀବନ-ନାଟକର ଶେଷ ଯବନିକାପାତ ହେଲା । ଲଣ୍ଡନର ଷ୍ଟେପ୍ଲଟନ୍ ଗ୍ରୋଭ୍ ଠାରେ ଜନୈକା ମହିଳାଙ୍କ ଗୃହରେ ଅବସ୍ଥାନ କରୁଥିବା ସମୟରେ ଜ୍ୱରାକ୍ରାନ୍ତ ହୋଇ ୧୮୩୩ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୨୭ ତାରିଖଦିନ ସେ ଇହଲୀଳା ସାଙ୍ଗ କଲେ ସତ୍ୟ; କିନ୍ତୁ ନବୀନ ଭାରତର ପ୍ରତିଷ୍ଠାତାରୂପେ ଯୁଗପ୍ରବର୍ତ୍ତକ ରାମମୋହନ ଏ ବିରାଟ ଜାତିର ଇତିହାସରେ ଚିରଦିନ ଅମର ହୋଇ ରହିବେ ।

## ପ୍ରଶ୍ନ

୧ । ସମାଜସଂସ୍କାର କରିବାରେ ରାମମୋହନଙ୍କୁ କି କି ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡ଼ିଥିଲା ?

୨ । ଶିକ୍ଷାବିସ୍ତାରପାଇଁ ସେ କଅଣ କରିଥିଲେ ?

୩ । ରାମମୋହନ୍ କାହିଁକି ନବୀନ ଭାରତର ପ୍ରତିଷ୍ଠାତାରୂପେ ବିବେଚିତ ହୁଅନ୍ତି ?

୪ । ସରଳାର୍ଥ ପ୍ରକାଶ କର—

ପ୍ରତ୍ୟକ୍ଷ ଅନୁଭୂତ ଲବ୍ଧ, ତଥାକଥିତ ଧର୍ମପଣ୍ଡା, ଅଦମ୍ୟ ଉଦ୍ୟମ, ହୃଦୟରେ ଦାରୁଣ ଆଘାତ ଦେବା, ଜୀବନ-ନାଟକର ଶେଷ ଯବନିକାପାତ ।

୫ । ପ୍ରକୃତିପ୍ରତ୍ୟୟ ଲେଖ—

ପ୍ରଦର୍ଶନ, ନିଯୁକ୍ତ, ଅଧ୍ୟୟନ, ଅପରିହାର୍ଯ୍ୟ, ପରିଗଣିତ, ନିରୋଧ, ପ୍ରବର୍ତ୍ତିତ, ଅନ୍ଦୋଳନ ।

୬ । ସନ୍ଧିବିଚ୍ଛେଦ କର—

ବହିର୍ପ୍ରେରିତ, ମନୋବୃତ୍ତି, ଗତ୍ୟନ୍ତର, ବାଦାନୁବାଦ, ଯଥେଷ୍ଟ, ନିର୍ଦ୍ଦେଶ ।

---

## ଚୀନ ପରିବ୍ରାଜକ ହୁଏନ୍‌ସାଂ

ଅତି ପ୍ରାଚୀନ କାଳରୁ ମହାପୁରୁଷ ବୁଦ୍ଧଦେବଙ୍କ ଜନ୍ମଭୂମି-ଏହି ଭାରତବର୍ଷ ଚୀନ ଓ ମଧ୍ୟ-ଏସିଆର ବୌଦ୍ଧଧର୍ମାବଲମ୍ବୀ-ମାନଙ୍କର ପ୍ରଧାନ ତୀର୍ଥଭୂମିରୂପେ ପରିଗଣିତ ହୋଇଅଛି । ଦ୍ରୁତଗାମୀ ଯାନବାହନର ଅଭାବ ଓ ପଥର ବିପଦସଙ୍କୁଳତା ସତ୍ତ୍ୱେ ସେମାନେ ପ୍ରଫୁଲ୍ଲଚିତ୍ତରେ ଏହି ତୀର୍ଥାଟନକୁ ନିଜର କର୍ତ୍ତବ୍ୟ

ବୋଲି ବିବେଚନା କରୁଥିଲେ । ପୁରାତନ ପରିବ୍ରାଜକମାନଙ୍କ ମଧ୍ୟରେ ହୁଏନ୍‌ସାଂଙ୍କ ନାମ ବିଶେଷଭାବରେ ଉଲ୍ଲେଖଯୋଗ୍ୟ ।

ହୁଏନ୍‌ସାଂ ଚୀନ ଦେଶର ଜଣେ ଅଦ୍ୱିତୀୟ ପଣ୍ଡିତ ବୋଲି ଜନସାଧାରଣ ତଥା ଚୀନସମ୍ରାଟଙ୍କଦ୍ୱାରା ସମ୍ମାନିତ ହେଉଥିଲେ । ୬୨୯ ଖ୍ରୀଷ୍ଟାବ୍ଦରେ ସେ ଭାରତ ପର୍ଯ୍ୟଟନ କରିବା ଅଭିପ୍ରାୟରେ ଚୀନ-ସମ୍ରାଟଙ୍କର ଅନୁମତି ପ୍ରାର୍ଥନା କଲେ । ସେତେବେଳକୁ ସେ ଷଡ଼୍‌ବିଂଶ-ବର୍ଷବୟସ୍କ ଯୁବକ ମାତ୍ର । କିନ୍ତୁ ଚୀନ୍-ସମ୍ରାଟ୍ ତାଙ୍କ ପ୍ରତିଭାରେ ଏପରି ମୁଗ୍ଧ ହୋଇଥିଲେ ଯେ, ସେ ତାଙ୍କୁ ସ୍ୱଦେଶରୁ ଅନ୍ୟତ୍ର ଯିବାକୁ ଅନୁମତି


[ ହୁଏନ୍‌ସାଂ ]

ଦେଲେ ନାହିଁ । ତାଙ୍କର ଆଶଙ୍କା ହେଲା ଯେ, ବିପତ୍‌ସଙ୍କୁଳ ମାର୍ଗରେ ଏତେ ଦୀର୍ଘ ପଥ ଅତିକ୍ରମ କରି ହୁଏନ୍‌ସାଂ ଭାରତ ପର୍ଯ୍ୟଟନପୂର୍ବକ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିପାରିବେ ନାହିଁ; କିନ୍ତୁ ହୁଏନ୍‌ସାଂ ନିଜର ଅଦମ୍ୟ ଅଭିଳାଷ ତ୍ୟାଗ କଲେ ନାହିଁ । ସମ୍ରାଟଙ୍କ ଅଜ୍ଞାତସାରରେ ସେ ଚୀନ ପରିତ୍ୟାଗ କରି ଭାରତବର୍ଷ ଅଭିମୁଖରେ ଅଗ୍ରସର ହେଲେ ।

ପଥମଧ୍ୟରେ ହୁଏନ୍‌ସାଂଙ୍କୁ ବହୁ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମଧ୍ୟ-ଏସିଆର ମରୁମୟ ପ୍ରାନ୍ତରରେ ପଥଭ୍ରାନ୍ତ ହୋଇ ସେ ଏକଦା କ୍ଳାନ୍ତ ଓ ତୃଷାରେ ଜୀବନର ଆଶା ତ୍ୟାଗ କରିଥିଲେ । କିନ୍ତୁ ଅଦ୍ଭୁତଭାବରେ ତାଙ୍କର ଜୀବନରକ୍ଷା ହୋଇଥିଲା । ନିତାନ୍ତ ଅବସନ୍ନ ଓ ତୃଷାର୍ତ୍ତ ହୋଇ ସେ ଅଶ୍ୱପୃଷ୍ଠରୁ ଅବତରଣ କରି ବାଲୁକାମୟ ପ୍ରାନ୍ତରରେ ବସିପଡ଼ିଲେ । ଅଶ୍ୱଟି ମଧ୍ୟ ଖାଦ୍ୟପେୟ ଅଭାବରୁ ନିତାନ୍ତ ଦୁର୍ବଳ ହୋଇ ପଡ଼ିଥିଲା । ସେ ନିଜର ଦୁରବସ୍ଥା ବିଷୟ ଚିନ୍ତା କରୁଛନ୍ତି, ଏହି ସମୟରେ ଅଶ୍ୱଟି ହଠାତ୍ ଗୋଟିଏ ଦିଗକୁ ପ୍ରଧାବିତ ହେଲା । ହୁଏନ୍‌ସାଂ ବାଧ୍ୟ ହୋଇ ଅଶ୍ୱର ଅନୁଗମନ କଲେ । କିଛିଦୂର ଯିବାପରେ ସେ ଗୋଟିଏ ମରୂଦ୍ୟାନ୍ ଦେଖିବାକୁ ପାଇଲେ । ସେଠାରେ ସେ ଜଳପାନ କରି ତୃପ୍ତି ବୋଧ କଲେ । ଅଶ୍ୱଟି ମଧ୍ୟ ଖାଦ୍ୟପେୟ ପାଇ ନୂତନ ବଳ ଲାଭ କଲା । ଏହାପରେ ନବଜୀବନ ପାଇ ହୁଏନ୍‌ସାଂ ଗନ୍ତବ୍ୟ ପଥରେ ଅଗ୍ରସର ହେଲେ । ପଥମଧ୍ୟରେ ସେ ବହୁ ବାର ଦସ୍ୟୁମାନଙ୍କଦ୍ୱାରା ଆକ୍ରାନ୍ତ ହୋଇଥିଲେ; ମାତ୍ର ଈଶ୍ୱରଙ୍କ କୃପାରୁ ସେ ସକଳ ବିପଦରୁ ଉଦ୍ଧାର ପାଇଥିଲେ ।

ପ୍ରାୟ ଏକ ବର୍ଷପରେ ହୁଏନ୍‌ସାଂ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତବର୍ତ୍ତୀ ଗାନ୍ଧାର ( ଆଧୁନିକ କାନ୍ଦାହାର ) ନାମକ ରାଜ୍ୟରେ ଉପସ୍ଥିତ ହେଲେ । ସେଠାରେ କିଛିଦିବସ ଅତିବାହିତ କରି ସେ କାଶ୍ମୀର ରାଜ୍ୟରେ ପଦାର୍ପଣ କଲେ । କାଶ୍ମୀରର ରାଜା ତାହାଙ୍କୁ ଯଥେଷ୍ଟ ସମାଦର କରିଥିଲେ । ହୁଏନ୍‌ସାଂ କେବଳ ଚୀନ ଦେଶର ଭାଷା, ସାହିତ୍ୟ ଓ ଦର୍ଶନ ଶାସ୍ତ୍ରରେ ନିପୁଣ ନ ଥିଲେ; ସଂସ୍କୃତ ଭାଷାରେ ମଧ୍ୟ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କର ସରଳ

ଜୀବନଯାପନ, ଗମ୍ଭୀର ପାଣ୍ଡିତ୍ୟ ଓ ଧର୍ମପରାୟଣତା ପ୍ରଭୃତି ଗୁଣରେ କାଶ୍ମୀରରାଜ ମୋହିତ ହୋଇଯାଇଥିଲେ । ତେଣୁ ସେ କାଶ୍ମୀର ରାଜ୍ୟରେ ପ୍ରାୟ ଦୁଇ ବର୍ଷକାଳ ଅବସ୍ଥାନ କରି ପରେ ଦକ୍ଷିଣାଭିମୁଖରେ ଅଗ୍ରସର ହେଲେ ।

ହୁଏନ୍‌ସାଂ ପଥମଧ୍ୟରେ ସ୍ଥାନେ ସ୍ଥାନେ ରହି ଭାରତୀୟମାନଙ୍କ ଆଚାରବ୍ୟବହାର, ରୀତିନୀତି ପ୍ରଭୃତି ଉତ୍ତମରୂପେ ପର୍ଯ୍ୟବେକ୍ଷଣ କରୁଥିଲେ । ତାହାଙ୍କ ଭ୍ରମଣବୃତ୍ତାନ୍ତକୁ ତତ୍‌କାଳୀନ ଭାରତ ଇତିହାସର ଅତି ମୂଲ୍ୟବାନ୍ ଉପାଦାନରୂପେ ଗ୍ରହଣ କରାଯାଏ । ସେଥିରୁ ଜଣାଯାଏ ଯେ, ସେତେବେଳେ. ଜାତି-ପ୍ରଥା ଭାରତୀୟ-ମାନଙ୍କ ଉପରେ ବିଶେଷ ପ୍ରଭାବ ବିସ୍ତାର କରିଥିଲା । ଏହା ସମାଜର ମେରୁଦଣ୍ଡସ୍ୱରୂପ କାର୍ଯ୍ୟ କରୁଥିଲା । କ୍ଷତ୍ରିୟ ଓ ବ୍ରାହ୍ମଣ-ମାନେ ସରଳ ଜୀବନ ଯାପନ କରୁଥିଲେ । ରୁଟି ଓ ଭାତ ଜନସାଧାରଣଙ୍କର ପ୍ରଧାନ ଖାଦ୍ୟ ଥିଲା । ସେମାନେ ପ୍ରଚୁର ପରିମାଣରେ ଦୁଗ୍ଧ ଓ ଘୃତ ବ୍ୟବହାର କରୁଥିଲେ । ଦେଶର ଶାସନପଦ୍ଧତି ସତ୍ୟ ଓ ନ୍ୟାୟ ଉପରେ ପ୍ରତିଷ୍ଠିତ ଥିଲା । ଲୋକେ ସାମାନ୍ୟ ପରିମାଣରେ କର ଦେଉଥିଲେ । ଗମନା-ଗମନର ସୁବିଧା ନିମିତ୍ତ ଉତ୍ତମ ମାର୍ଗମାନ ଥିଲା । ଲୋକେ ଶାନ୍ତିରେ ବାସ କରୁଥିଲେ । ଚୌର୍ଯ୍ୟ ଓ ଦସ୍ୟୁବୃତ୍ତି କ୍ୱଚିତ୍ ପରିଲକ୍ଷିତ ହେଉଥିଲା ।

ସେକାଳର ନାଳନ୍ଦା ବିଶ୍ୱବିଦ୍ୟାଳୟ ( ଆଧୁନିକ ବିହାରର ଅନ୍ତର୍ଗତ ) ସମଗ୍ର ପ୍ରାଚ୍ୟ ଭୂଖଣ୍ଡର ଗୋଟିଏ ପ୍ରଧାନ ଶିକ୍ଷାକେନ୍ଦ୍ର-ରୂପେ ବିବେଚିତ ହେଉଥିଲା । ହୁଏନ୍‌ସାଂ ଏହି ବିଦ୍ୟାପୀଠରେ କେତେକ ବର୍ଷ ଅବସ୍ଥାନ କରି ଅଧ୍ୟକ୍ଷ ଶୀଳଭଦ୍ରଙ୍କ ନିକଟରୁ ବୌଦ୍ଧଦର୍ଶନ ଶାସ୍ତ୍ର ଅଧ୍ୟୟନ କରିଥିଲେ । ନାଳନ୍ଦା ବିଦ୍ୟାପୀଠ

ସମ୍ବନ୍ଧରେ ହୁଏନ୍‌ସାଂ ଲେଖି ଯାଇଅଛନ୍ତି ଯେ, ଏଠାରେ ଶତ ଶତ ଅଧ୍ୟାପକ ଓ ସହସ୍ର ସହସ୍ର ଛାତ୍ର ବାସ କରୁଥିଲେ । ସଂଭ୍ରାନ୍ତ-ବଂଶୀୟ ଯୁବକ ଏପରିକି ରାଜପୁତ୍ରମାନେ ମଧ୍ୟ ଏଠାରେ ଶିକ୍ଷାଲାଭ କରିବାକୁ ଲାଳାୟିତ ହେଉଥିଲେ । ଶିକ୍ଷାର ମାନ ଅତି ଉଚ୍ଚ ଥିଲା ଏବଂ ଏଠାରେ ପ୍ରବେଶ କରିବା ପୂର୍ବରୁ ଛାତ୍ରମାନଙ୍କୁ ଦ୍ୱାର-ପଣ୍ଡିତଙ୍କ ନିକଟରେ ଅନେକପ୍ରକାର କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡ଼ୁଥିଲା ।

କେତେକ ବର୍ଷ ମଧ୍ୟରେ ହୁଏନ୍‌ସାଂଙ୍କ ଖ୍ୟାତି ଭାରତର ଚତୁର୍ଦ୍ଦିଗରେ ବ୍ୟାପ୍ତ ହୋଇ ଯାଇଥିଲା ଏବଂ ଭାରତର ବିଭିନ୍ନ ରାଜା ତାଙ୍କୁ ନିଜ ରାଜ୍ୟକୁ ନେବାକୁ ବ୍ୟାକୁଳତା ପ୍ରକାଶ କରିଥିଲେ । ଆସାମର ରାଜକୁମାର ବାରମ୍ବାର ନିମନ୍ତ୍ରଣ କରି ହୁଏନ୍‌ସାଂଙ୍କ ନିକଟକୁ ଦୂତ ପ୍ରେରଣ କରିବାରୁ ସେ ଆସାମ ଯାତ୍ରା କଲେ । ଏଥିମଧ୍ୟରେ କାନ୍ୟକୁବ୍‌ଜାଧିପତି ହର୍ଷବର୍ଦ୍ଧନ ମଧ୍ୟ ତାହାଙ୍କୁ ନିଜ ରାଜଧାନୀକୁ ଅଣାଇବାପାଇଁ ଏକାନ୍ତ ଉତ୍ସୁକ ହୋଇଥିଲେ । ସେତେବେଳେ ତାଙ୍କ ଆସାମଯାତ୍ରାର ସମ୍ବାଦ ପାଇ ହର୍ଷବର୍ଦ୍ଧନ ଆସାମ-ରାଜକୁମାରଙ୍କ ନିକଟକୁ ଖବର ପଠାଇଲେ ଯେ, ସେ ଯେପରି ଚୀନ-ପରିବ୍ରାଜକଙ୍କୁ ଶୀଘ୍ର ତାଙ୍କ ଦରବାରକୁ ପ୍ରେରଣ କରନ୍ତି । ସ୍ୱୟଂ ଆସାମ-ରାଜକୁମାର ହୁଏନ୍‌ସାଂଙ୍କୁ ସଙ୍ଗରେ ନେଇ କାନ୍ୟକୁବ୍‌ଜ ଯାଇଥିଲେ । ତାଙ୍କ ଆଗମନ ସମ୍ବାଦ ପାଇ ସମ୍ରାଟ୍ ତାଙ୍କୁ ଗଙ୍ଗାତଟରୁ ରାଜକୀୟ ସମ୍ମାନରେ ନିଜ ରାଜଧାନୀକୁ ନେଇ ବିଶିଷ୍ଟ ଅତିଥିରୂପେ ରାଜପ୍ରାସାଦରେ ରଖାଇଥିଲେ ।

ପରେ ହୁଏନ୍‌ସାଂ ରାଜଦରବାରରେ ବୌଦ୍ଧଧର୍ମର ମହାଯାନ ଦର୍ଶନ ସମ୍ବନ୍ଧରେ ବ୍ୟାଖ୍ୟା କରିଥିଲେ । ଏହି

ଆଲୋଚନାରେ ଅନ୍ୟାନ୍ୟ ପଣ୍ଡିତଙ୍କ ସହିତ ହର୍ଷବର୍ଦ୍ଧନଙ୍କର ବିଧବା ଭଗିନୀ ବିଦୁଷୀ ରାଜ୍ୟଶ୍ରୀ ମଧ୍ୟ ଯୋଗଦାନ କରିଥିଲେ । ଏହି ବ୍ୟାଖ୍ୟାନରେ ଅନୁପ୍ରାଣିତ ହୋଇ ହର୍ଷବର୍ଦ୍ଧନ ଗୋଟିଏ ଧର୍ମସଭା ଡକାଇ ସେଥିରେ ବିଭିନ୍ନ ଧର୍ମ ବିଷୟରେ ଆଲୋଚନା କରାଇଥିଲେ । ଧର୍ମସଭାରେ ହୁଏନ୍‌ସାଂ ଅନେକ ବିଖ୍ୟାତ ପଣ୍ଡିତଙ୍କୁ ଯୁକ୍ତିରେ ପରାଭୂତ କରିଥିଲେ । ହର୍ଷବର୍ଦ୍ଧନ ତାଙ୍କର ସମ୍ମାନପ୍ରଦର୍ଶନ ନିମିତ୍ତ ଗୋଟିଏ ସୁସଜ୍ଜିତ ହସ୍ତିପୃଷ୍ଠରେ ସ୍ୱର୍ଣ୍ଣ-ଆସନରେ ତାଙ୍କୁ ଉପବିଷ୍ଟ କରାଇ ନଗରରେ ପରିକ୍ରମା କରାଇଥିଲେ । ଏଥିରେ ବୈଦିକ ବ୍ରାହ୍ମଣମାନେ ଈର୍ଷାନ୍ୱିତ ହୋଇ ହୁଏନ୍‌ସାଂଙ୍କୁ ହତ୍ୟା କରିବାକୁ ଉଦ୍ୟମ କରି ବିଫଳ ହୋଇଥିଲେ । ପରେ ସେମାନେ ହର୍ଷଙ୍କୁ ହତ୍ୟା କରିବାକୁ ମଧ୍ୟ ଚକ୍ରାନ୍ତ କରିଥିଲେ; ମାତ୍ର ସେମାନଙ୍କର ଷଡ଼ଯନ୍ତ୍ର କାର୍ଯ୍ୟକାରୀ ହେବା ପୂର୍ବରୁ ଜଣା ପଡ଼ିଯାଇଥିଲା । ହୁଏନ୍‌ସାଂଙ୍କ ଅନୁରୋଧରେ ସମ୍ରାଟ୍ ଷଡ଼ଯନ୍ତ୍ରକାରୀଙ୍କପ୍ରତି ସାମାନ୍ୟ ଦଣ୍ଡବିଧାନ କରି ସେମାନଙ୍କୁ ମୁକ୍ତି ଦେଇଥିଲେ । ଏହି ଘଟଣା ପରେ ବୌଦ୍ଧଧର୍ମ ରାଜା ତଥା ପ୍ରଜାମାନଙ୍କ ଉପରେ ବିଶେଷ ପ୍ରଭାବ ବିସ୍ତାର କରି ପାରିଥିଲା ।

ହୁଏନ୍‌ସାଂଙ୍କ ବିବରଣୀରୁ ଆଜି ମଧ୍ୟ ଜଣାଯାଏ ଯେ, ସେକାଳରେ ଭାରତର ନାନା ସ୍ଥାନରେ ହିନ୍ଦୁ ମନ୍ଦିର ଓ ବୌଦ୍ଧ-ବିହାର ଏକତ୍ର ବିଦ୍ୟମାନ ଥିଲା । କେବଳ ଆସାମରେ ବୌଦ୍ଧ-ଧର୍ମର ପ୍ରଭାବ ଆଦୌ ନ ଥିଲା । କାନ୍ୟକୁବ୍ଜର ହର୍ଷ, ମହାରାଷ୍ଟ୍ରର ପୁଲକେଶିନ୍ ଓ ଦକ୍ଷିଣ-ଭାରତର ପଲ୍ଲବବଂଶୀୟ ରାଜାମାନେ ହିନ୍ଦୁମନ୍ଦିର ନିକଟରେ ବୌଦ୍ଧବିହାରମାନ ନିର୍ମାଣ କରାଇଥିଲେ । ଭାରତୀୟ ରାଜାମାନଙ୍କ ଦାନଶୀଳତା ତାଙ୍କୁ

ବିସ୍ତୃତ ଓ ବିମୁଗ୍ଧ କରିଦେଇଥିଲା । ପ୍ରୟାଗ ତୀର୍ଥର କୁମ୍ଭମେଳାରେ ହୁଏନ୍‌ସାଂ ହର୍ଷବର୍ଦ୍ଧନଙ୍କ ସହିତ ପଞ୍ଚସ୍ତରି ଦିନ ଅତିବାହିତ କରିଥିଲେ । ସେଠାରେ ସମ୍ରାଟ୍ ପ୍ରତ୍ୟହ ଦରିଦ୍ର ଓ ସନ୍ନ୍ୟାସୀ-ମାନଙ୍କୁ ଦାନ ଦେଉଥିଲେ । ସେ ଲେଖିଅଛନ୍ତି ଯେ, ସମ୍ରାଟ୍ ଦଶ ହଜାର ବୌଦ୍ଧସନ୍ନ୍ୟାସୀଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଏକ ଶତ ସ୍ୱର୍ଣ୍ଣମୁଦ୍ରା, ଗୋଟିଏ ମୁକ୍ତା ଓ ଖଣ୍ଡିଏ ପଞ୍ଚବସ୍ତ୍ର ପ୍ରଦାନପୂର୍ବକ ରାଜଧାନୀକୁ ଫେରିଯାଇଥିଲେ । ଗୁଜରାଟରେ ମଧ୍ୟ ହୁଏନ୍‌ସାଂ ଏହିପରି ଦାନଶୀଳତା ପ୍ରତ୍ୟକ୍ଷ କରିଥିଲେ ।

ଭାରତର ବିଭିନ୍ନ ସ୍ଥାନ ପରିଭ୍ରମଣରେ ହୁଏନ୍‌ସାଂ ପନ୍ଦର ବର୍ଷ ଅତିବାହିତ କରିଥିଲେ । ସେ ଓଡ଼ିଶାକୁ ମଧ୍ୟ ଆସିଥିଲେ । ସେ ଭାରତରୁ ୬୫୭ ଖଣ୍ଡି ସଂସ୍କୃତ ଗ୍ରନ୍ଥ ଓ ଅନେକଗୁଡ଼ିଏ ପ୍ରାଚୀନ ଐତିହାସିକ ନିଦର୍ଶନ ସଂଗ୍ରହ କରି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ହୁଏନ୍‌ସାଂଙ୍କ ଭାରତଭ୍ରମଣ ନାନା ଐତିହାସିକ ଓ ଭୌଗୋଳିକ ତଥ୍ୟରେ ପରିପୂର୍ଣ୍ଣ । ଏହି ବିବରଣୀ ପାଠ କରି ଆଧୁନିକ ପଣ୍ଡିତମାନେ ସପ୍ତମ ଶତାବ୍ଦୀର ଭାରତର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥା ସମ୍ବନ୍ଧରେ ଅନେକ ଜ୍ଞାନ ଲାଭ କରିପାରୁଅଛନ୍ତି ।

## ପ୍ରଶ୍ନ

୧ । ହୁଏନ୍‌ସାଂ କିପରି ଭାରତକୁ ଆସିଥିଲେ ?

୨ । ହୁଏନ୍‌ସାଂଙ୍କ ସମୟରେ ଭାରତର ସାମାଜିକ ଅବସ୍ଥା କିପରି ଥିଲା ?

୩ । ହୁଏନ୍‌ସାଂଙ୍କ ଭ୍ରମଣ ବିବରଣୀରୁ ସପ୍ତମ ଶତାବ୍ଦୀରେ ଭାରତର ଧର୍ମ ସମ୍ବନ୍ଧରେ କଅଣ ଜଣାଯାଏ ?

୪ । ପ୍ରାଚୀନ ଭାରତୀୟ ରାଜାମାନଙ୍କ ଦାନଶୀଳତା ବିଷୟରେ ତୁଳସୀ କଅଣ ଲେଖିଅଛନ୍ତି ?

୫ । ବିଶେଷ୍ୟକୁ ବିଶେଷଣରେ ଓ ବିଶେଷଣକୁ ବିଶେଷ୍ୟରେ ପରିଣତ କର:—

ଜ୍ଞାନ, ସମାଜ, ଅକ୍ଲିଷ୍ଟ, ନିମନ୍ତ୍ରଣ, ତ୍ୟାଗ, ବିରକ୍ତ, ଉପବିଷ୍ଟ ।

---

## ଛନ୍ଦଚ୍ଛେଦ

ମନ୍ଦିମୂର୍ଚ୍ଛା ଶୁଣି କୋପେ ବଂଶପାଣି
ପୁଷ୍ପକଯାନେ ବିଜେ କଲ,
ଧନୁଶର ଧରି ଅକାଶେ ରହିଣ
ସୁବଳଗିରିକ ଗୁହିଲ;
ଝୋଲେ ଦେଖିଲ,
ଦୂର୍ବାଦଳ ରାମ ଶରୀର;
ବ୍ରହ୍ମାଣ୍ଡ ଶୋଭା କି ଘେନି ଅବତାର
ମଦନ ଯାର ପରିଗ୍ଭର । ୧ ।
ବିରହ ମୂର୍ଚ୍ଛାଲ ପରେ ବିଜୟ
ସୁଗ୍ରୀବ-ଉରେ ଅଭଙ୍କଣ,
ଦକ୍ଷିଣ ଭୁଜ ତାରସୁତ-କନ୍ଧରେ,
ହନୁ ଗୃପେ ବାମ ଚରଣ;
ଲଙ୍କା ଗଡ଼ରେ,
ପଡ଼ିଛି କୋପ ନେତ୍ରକୋଣ;
ଶ୍ରୀରାମ ବାମ ପାର୍ଶ୍ବରେ ବସିଣ,
ଶର ସଲଖନ୍ତି ଲକ୍ଷ୍ମଣ । ୨ ।

ଘୁମୁରେ କାମ୍ବବ ବେନି କର ଯୋଡ଼ି
ଇଶାନ୍ତ ଯୁଦ୍ଧ ଅନୁକୂଳ,
ଗୁଣ ଦେଇଣ କୋଦଣ୍ଡ ଧରିଛନ୍ତି
ବାମ ଅଙ୍ଗ କର-କମଳ,
ଦକ୍ଷିଣ କର-
ପଲ୍ଲବେ ଶୋହେ ତୀକ୍ଷ୍ଣ ଶର;
ସୁବାସ କୁସୁମେ ସୁକଣ୍ଠ ମଣ୍ଡିତ
ବନ-କୁସୁମମାଳା ଉର । ୩ ।
ମେଘଖଣ୍ଡ ପ୍ରାୟ ଗଗନେ ଦେଖିଣ
ପଚ୍ଛୁ ଛନ୍ତି ସୀତାପତି—
ଅହେ ଲଙ୍କପତି, ଗଗନେ କି ଦିଶେ
କହ କହ ଏ କିସ ସ୍ଥିତି ?
କର୍ଣ୍ଣେ କହିଲ
କର-ବଦନେ ବିଭୀଷଣ
ଅଙ୍ଗୁଳି ଟେକି ଦେଖାଇ ବୋଲେ, ଦେବ,
ସୈନ୍ୟ କଟକ ଅଟ୍ଟ ରାବଣ । ୧
ଶ୍ରୀରାମ ଶ୍ରବଣେ ଏମନ୍ତ କହନ୍ତେ
ଅନାଇଥିଲ ଦଶଶିର,
ବୁଲାଇଣ ଗଦା ପ୍ରହାର କରନ୍ତେ
ଧଇଲ ମନ୍ଦାର-କୁମର;
ଦେଖି ଶ୍ରୀରାମ,
କୋଦଣ୍ଡେ କାଣ୍ଡ ବସାଇଲେ;
ରାବଣ ଧନୁ ମୁକୁଟ ସବ ଛତ୍ର
ଛେଦ ବୋଲିଣ ଅଙ୍କ ଦେଲେ । ୫ ।

**ଅଗ୍ନ** ପାଇଣ ଶର ଧନୁ ମୁକୁଟ
କାଟିଲେ ତାର ସବ ଛତ୍ର,
ଏବେ ବେଳକେ କି ଛୁଡ଼ିଣ ପଡ଼ିଲ
ଗ୍ରହ ସଙ୍ଗେ ସବ ନକ୍ଷତ୍ର;
ତହିଁ କିଅବା
ଗଜ-ମୁକୁତା ହେଲା ବୃଷ୍ଟି;
କି ଅବା ମଲ୍ଲିକା କୁସୁମେ ରାମଙ୍କୁ
ଅଞ୍ଜଳି ଦେଲେ ପରମେଷ୍ଠି । ୨ ।

ରାମ ବାଣଠାଣ ଦେଖିଣ ରାବଣ
ଲଜ ଭୟରେ ପଳାଇଲ;
ଛେଦନ କଲେ ଯେତେ ଛତ୍ର ତାହାର
ସିନ୍ଧୁ ଗର୍ଭରେ ସେ ପଡ଼ିଲ;
ଚିନ୍ତା-ଜଳରେ
ମନ-ମୀନ ତାର ବୁଡ଼ିଲ;
ବୋଲେ ବଣି ସୀତା ହରିଲ ଦିନରୁ
ଦଇବ ତାହାକୁ ଛାଡ଼ିଲ । ୭ ।

ପ୍ରଶ୍ନ

୧ । ରାବଣ ସୁବେଳଗିରିକୁ ଚାହିଁ କଅଣ କଅଣ ଦେଖିଲା ?

୨ । ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ବିଭୀଷଣଙ୍କ ଉକ୍ତିକୁ ନିଜ ଭାଷାରେ ପ୍ରକାଶ କର ।

୩ । କିପରି ରାବଣର ଛତ୍ରଚ୍ଛେଦ ହେଲା ?

୪ । ସୁଗ୍ରୀବ, ବଂଶପାଣି, ବିଭୀଷଣ, ଦଶଶିର—ଏଗୁଡ଼ିକର ଅର୍ଥ ଓ ଅକ୍ଷରିକ ଅର୍ଥ ଲେଖ ।

୫ । ଅନୁକୂଳ, ମନ-ମୀନ, କର-ପଲ୍ଲବ—ଏଗୁଡ଼ିକର ବ୍ୟାସବାକ୍ୟ ଓ ସମାସ ନାମ ଲେଖ ।

---

# କୁମାର ମନ୍ତ୍ରଗୁପ୍ତ ଓ କଳିଙ୍ଗ ରାଜକୁମାରୀ

[ ଅଗ୍ରଜ୍ଞ ଦଣ୍ଡୀଙ୍କ ପ୍ରଣୀତ 'ଦଶକୁମାର ଚରିତ' ସଂସ୍କୃତ ଗଳ୍ପ-ସାହିତ୍ୟରେ ଅଦ୍ୱିତୀୟ ରତ୍ନ । ଏଥିରେ ଅନୁମାନିକ ସପ୍ତମ ଶତାବ୍ଦୀର ଭାରତର ସାମାଜିକ ଓ ରାଜନୈତିକ ପରିସ୍ଥିତି ମନୋହର ଗଳ୍ପ ମଧ୍ୟରେ ରୂପ ପାଇଛି । ମଗଧ ରାଜକୁମାର ରାଜବାହନ ନଅ ଜଣ ସଖାଙ୍କ ସହ ବିଦ୍ୟାଶିକ୍ଷା କରିସାରିବାପରେ ସାଂସାରିକ ଅନୁଭୂତି ଲାଭ କରିବା ପାଇଁ ଦେଶାନ୍ତର ଯାତ୍ରା କଲେ । ଘଟନାଚକ୍ରରେ ରାଜକୁମାର ଅନ୍ତର୍ହିତ ହୁଅନ୍ତେ ଅନ୍ୟ ସଖାମାନେ ତାହାଙ୍କ ଅନ୍ୱେଷଣ ଉଦ୍ଦେଶ୍ୟରେ ଭାରତର ବିଭିନ୍ନ ଅଞ୍ଚଳ ପର୍ଯ୍ୟଟନ କରିଥିଲେ । ଶେଷରେ ରାଜକୁମାରଙ୍କ ସହ ସମସ୍ତେ ଉଜ୍ଜୟିନୀ ନଗରୀଠାରେ ସମ୍ମିଳିତ ହୋଇ ନିଜ ନିଜର ଅନୁଭୂତି ପ୍ରକାଶ କଲେ । କୁମାର ମନ୍ତ୍ରଗୁପ୍ତ କଳିଙ୍ଗ ଦେଶକୁ ଆଗମନ କରିଥିଲେ । ସେତେବେଳେ ଏଠାରେ ତନ୍ତ୍ରଶାସ୍ତ୍ରର ଅଧିକ ପ୍ରଭାବ ଥିବା କଥା ଜଣାଯାଏ । ]

ମନ୍ତ୍ରଗୁପ୍ତ କହିଲେ—"ଯୁବରାଜ ଓ ବନ୍ଧୁଗଣ, ମୁଁ ମୋହର ଭ୍ରମଣମଧ୍ୟରେ କଳିଙ୍ଗ ନଗରରେ ଉପସ୍ଥିତ ହେଲି । ସେତେବେଳକୁ ରାତି ଉପଗତ ହୋଇଥିବାରୁ ନଗରର ପ୍ରବେଶ-ଦ୍ୱାର ରୁଦ୍ଧ ହୋଇଯାଇଥିଲା । ସୁତରାଂ ନଗର-ପ୍ରାଚୀର ବହିର୍ଭାଗରେ ରାତିଯାପନ କରିବାକୁ ବାଧ୍ୟ ହେଲି । ମାତ୍ର ହଠାତ୍ ଆକାଶ ମେଘାଚ୍ଛନ୍ନ ହୋଇ ସାମାନ୍ୟ ବୃଷ୍ଟି ହେବା ଫଳରେ ଶୈତ୍ୟର ପ୍ରକୋପ ବୃଦ୍ଧିପ୍ରାପ୍ତ ହୁଅନ୍ତେ ମୁଁ କୌଣସି ଆଶ୍ରୟ ଅନୁସନ୍ଧାନରେ ବାହାରି ଶେଷରେ ଶ୍ମଶାନନିକଟସ୍ଥ ଏକ ନଦୀ-ସେତୁଗର୍ଭରେ ପ୍ରବେଶ କଲି । ଏ ସ୍ଥାନ ରାତ୍ରିସାରା ସମ୍ପୂର୍ଣ୍ଣ

ଅନୁପଯୋଗୀ ହେଲେ ମଧ୍ୟ 'ଯାଚକ କଦାପି ନିବାଚକ ହୋଇ ନ ପାରେ' ଏହି ଧାରଣା ନେଇ ସେଠାରେ ବସି ରହିଲି ଏବଂ ପଥଶ୍ରାନ୍ତ ଯୋଗୁ ବୃଷ୍ଟିବାତ୍ୟା ସତ୍ତ୍ୱେ ମୁଁ ତନ୍ଦ୍ରାଭିଭୂତ ହୋଇ ପଡ଼ିଲି ।

ମୁଁ ସ୍ୱପ୍ନରେ ଦେଖିଲି ଯେ, କୌଣସି ଭୀଷଣ ଚିତ୍କାର ଫଳରେ ଯେପରିକି ମୋହର ନିଦ୍ରାଭଙ୍ଗ ହୋଇଗଲା । ଅଳ୍ପ ଦୂରରେ ଦୁଇଟି କଦାକାର ପିଶାଚ ଦଣ୍ଡାୟମାନ । ସେମାନଙ୍କ ମଧ୍ୟରୁ ଜଣେ ଅପରକୁ କହୁଛି, 'ଦୁରନ୍ତ କଙ୍କାଳ-କାପାଳିକ ମୋତେ ପୁଣି ଡାକିଲାଣି । ପୁଣି କି ଦଣ୍ଡ ଦେବ କେଜାଣି ? ଏ ହାଡ଼ ସଂସାରରେ କଣ ଏପରି କେହି ବୀରପୁରୁଷ ନାହିଁ, ଯେ ଆମକୁ ଏ ପାପୀର କବଳରୁ ରକ୍ଷା କରିପାରେ ?' ବକ୍ତା ପ୍ରତ୍ୟୁତ୍ତରର ଅପେକ୍ଷା ନ ରଖି ଅଗ୍ରସର ହେଲା ଏବଂ ଅନ୍ୟ ପିଶାଚ ତାହାର ଅନୁସରଣ କଲା ।

ଏ ବିଚିତ୍ର ଘଟଣାର ତଥ୍ୟ ଅନୁସନ୍ଧାନ କରିବାନିମିତ୍ତ ମୁଁ ମଧ୍ୟ ସେମାନଙ୍କର ପଶ୍ଚାଦ୍‌ଗାମୀ ହେଲି । କିନ୍ତୁ ମୋତେ ବେଶୀ ଦୂର ଯାତ୍ରା କରିବାକୁ ହେଲା ନାହିଁ । ପ୍ରାୟ ଶତ ପଦ ଗତି କରିବା ପରେ ହଠାତ୍ କଙ୍କାଳ-ତାନ୍ତ୍ରିକର ଅଦୂରବର୍ତ୍ତୀ ହୋଇ ଯେଉଁ ଦୃଶ୍ୟ ଦେଖିଲି, ସେଥିରେ ମୋର ହୃତ୍‌କମ୍ପ ଜାତ ହେଲା ।

ଶ୍ମଶାନମଧ୍ୟରେ ପଦ୍ମାସନରେ ଜଣେ କାପାଳିକ ଉପବିଷ୍ଟ । ମସ୍ତକରେ ଜଟା, ସର୍ବାଙ୍ଗରେ ଭସ୍ମ, ଗଳାରେ ଖର୍ପରମାଳା, ସମ୍ମୁଖରେ ବିଶାଳ ହୋମକୁଣ୍ଡ—ମୁହୁର୍ମୁହୁଃ ଆହୁତିପ୍ରଦାନ ଓ ତୈଳନିକ୍ଷେପ ଫଳରେ ଲେଲିହାନଜିହ୍ୱ ହୋଇଉଠିଛି । ପାର୍ଶ୍ୱରେ ଉପରୋକ୍ତ ଭୌତିକ ମୂର୍ତ୍ତିଦ୍ୱୟ ବଦ୍ଧାଞ୍ଜଳି ହୋଇ ଦଣ୍ଡାୟମାନ—ଆଦେଶ ଅପେକ୍ଷାରେ । ମେଘମନ୍ଦ୍ରସ୍ୱରରେ

କାପାଳିକ ଆଦେଶ କଲ, 'ପଲ୍ଲକମଧ୍ୟରେ କଳିଙ୍ଗ-ରାଜକୁମାରୀ କନକଲେଖାକୁ ଆନୟନ କର ।' ବଜ୍ରସ୍ୱର କଥା, ପିଶାଚଦ୍ୱୟ ତତ୍‌କ୍ଷଣାତ୍ ତିରୋହିତ ହୋଇ ପଲ୍ଲକପାତ ପୂର୍ବରୁ ଏକ ଭାର ବହନ କରି ଅପି ଉପସ୍ଥିତ । ସେମାନେ ଊର୍ଦ୍ଧ୍ୱଶ୍ୱାସ ଅବସ୍ଥାରେ ଭାରଟିକୁ କାପାଳିକର ପାଦତଳେ ରଖି ପୁଣି ଦଣ୍ଡାୟମାନ ହେଲେ ।

ଏହି ଭାରମଧ୍ୟରେ ସୁକୁମାରୀ ରାଜକୁମାରୀ ଚେତନା ଲଭ କରି ଚିତ୍କାର କରି ଉଠିଲେ । କିନ୍ତୁ ପରମୂହୂର୍ତ୍ତରେ କାପାଳିକ ବାମ ହସ୍ତରେ ତାହାଙ୍କର କେଶ ଧାରଣ କରି ସୁରକ୍ଷିତ ଖଡ୍ଗ ନିକଟକୁ ଆକର୍ଷଣ କରିନେଲ ଏବଂ ଦକ୍ଷିଣ ହସ୍ତରେ ତାହା ଧାରଣ କରି ମସ୍ତକ ଛେଦନ କରିବାକୁ ଉଦ୍ୟତ ହେଲ । ଏହି ନାରକୀୟ ଦୃଶ୍ୟରେ ପିଶାଚ ଦୁହେଁ ମଧ୍ୟ ଭୀତତ୍ରସ୍ତ ହୋଇ ବିକଟଧ୍ୱନି କରି ଉଠିଲେ; ମାତ୍ର ଏହାର ପ୍ରତିରୋଧ ପାଇଁ ସେମାନଙ୍କର ଶକ୍ତି କାହିଁ ?

ଏତେବେଳଯାଏ ମୁଁ ନିର୍ବେଦ ନିର୍ବାକ୍ ଭାବରେ କାପାଳିକର ପଶ୍ଚାଦ୍ଦେଶରେ ଦଣ୍ଡାୟମାନ ହୋଇଥିଲି; ମୋ ପଦଯୁଗଳରୁ ଚଳତ୍‌ଶକ୍ତି ଲୋପ ପାଇଥିଲା । କିନ୍ତୁ ମୁଁ ଶେଷୋକ୍ତ ଦୃଶ୍ୟ ଦର୍ଶନ କରିବା ମାତ୍ରେ ମାନସିକ ପ୍ରତିକ୍ରିୟା ଫଳରେ ଉତ୍ତେଜିତ ହୋଇ ଅକସ୍ମାତରେ କାପାଳିକ ଉପରକୁ ଏକ ଲମ୍ଫ ଦେଲି ଏବଂ ଲୌହମୁଷ୍ଟିରେ ତାହାର ଦକ୍ଷିଣ ହସ୍ତକୁ ଧରିନେଇ ରଜ୍ଜୁ ଭଳି ତାହାକୁ ମୋଡ଼ିଦେଲି ।

ଏହି ଆକସ୍ମିକ ଆକ୍ରମଣରେ କାପାଳିକ ଉପାୟଶୂନ୍ୟ ହୋଇ ଯନ୍ତ୍ରଣାରେ ଚିତ୍କାର କଲ୍ଲ କରୁ ହସ୍ତରୁ ଖଡ୍ଗଟିକୁ ଖସାଇଦେଲ । ଏହି ଅବସରରେ ସେ ଦ୍ରୁତ କୌଣସି ମନ୍ତ୍ରୋଚ୍ଚାରଣ କରି ମୋତେ

ଭସ୍ମୀଭୂତ କରିଥାନ୍ତା । କିନ୍ତୁ ପଲକମଧ୍ୟରେ ମୁଁ ଖଡ୍ଗ ଉତ୍ତୋଳନ କରି ଏକ ପ୍ରହାରରେ ତାହାର ମସ୍ତକକୁ ସ୍କନ୍ଧରୁ ଛିନ୍ନ କରିଦେଲି ।

ରାଜକୁମାରୀ ଚେତନାହୀନ ଅବସ୍ଥାରେ ଭୂପତିତା । ମୁଁ ତାହାଙ୍କୁ ଉତ୍ତୋଳନ କରିବାକୁ ଯାଉଛି, ହଠାତ୍ ଦେଖିଲି, ଅସଂଖ୍ୟ କଦାକାର ପିଶାଚ କେଉଁ ଅଜ୍ଞାତ ସ୍ଥାନରୁ ଅବିର୍ଭୂତ ହୋଇ ନୃତ୍ୟ କରିବାକୁ ଲାଗିଲେ । ସେମାନଙ୍କର ଭଙ୍ଗୀ ଓ ଅବୋଧ ଚିତ୍କାରଦ୍ୱାରା ସେମାନେ ଯେ ଆନନ୍ଦ ପ୍ରକାଶ କରୁଛନ୍ତି, ଏହା ମୁଁ ବୁଝିପାରିଲି । ସେତେବେଳକୁ ରାଜକୁମାରୀଙ୍କର ମୁଖ କମେ ସତେଜ ଓ ଚକ୍ଷୁ ଅପେକ୍ଷାକୃତ ସରଳ ହୋଇ ଆସୁଥାଏ । ସେ ସଚେତ ହେବାପରେ ହୁଏତ ପିଶାଚମାନଙ୍କୁ ଦେଖି ପୁଣି ତ୍ରସ୍ତ ହୋଇ ପଡ଼ିବେ, ଏଥିପାଇଁ ସେମାନଙ୍କୁ ନୀରବ ଓ ଧୀରସ୍ଥିର ରହିବା ପାଇଁ ମୁଁ ଅନୁରୋଧ କଲି । ସେମାନେ ନୃତ୍ୟରୁ କ୍ଷାନ୍ତ ହେଲେ । ତାହାପରେ ଯେଉଁ ପିଶାଚ ରାଜକୁମାରୀଙ୍କୁ ଆନୟନ କରିଥିଲା, ସେ ସମ୍ମୁଖକୁ ଆସି କହିଲା, 'ହେ ବୀରଯୁବକ ! ଭୀତ ହୁଅ ନାହିଁ । ଆମେ ରାଜକୁମାରୀଙ୍କର କୌଣସି ଅମଙ୍ଗଳ କାମନା କରୁ ନାହୁଁ ; କିନ୍ତୁ କାପାଳିକର ଶକ୍ତି ଅଧୀନରେ ରହିଥିବାରୁ ଯେ କୌଣସି କ୍ରୁର କର୍ମପାଇଁ ସେ ଆଦେଶ ପ୍ରଦାନ କଲେ ଆଜଯାଏ ଆମେ ତାହା ପାଳନ କରିବାକୁ ବାଧ୍ୟ ହେଉଥିଲୁଁ । ରାଜକୁମାରୀ ଅତ୍ୟନ୍ତ ଭୟତ୍ରସ୍ତ ହୋଇ ପଡ଼ିଛନ୍ତି । ଆପଣ ତାହାଙ୍କୁ ପ୍ରବୋଧ ଦେଇ ସୁଖୀ କରନ୍ତୁ । ଆପଣହିଁ ତାହାଙ୍କର ପାଣି ଗ୍ରହଣ କରିବା ନିମିତ୍ତ ବିଧିନିର୍ଦ୍ଦିଷ୍ଟ ଯୁବକ ; ମନ୍ଦପ୍ରକୃତିକ କାପାଳିକ ତାହାଙ୍କୁ ବଳିଦାନ କରି ଆପଣଙ୍କୁ ଏ ସୌଭାଗ୍ୟରୁ ବଞ୍ଚିତ କରିବାକୁ ଯାଉଥିଲା । ଆପଣ ତାହାକୁ ହତ୍ୟା କରିବାଦ୍ୱାରା




[ ମନ୍ତ୍ରଗୁପ୍ତ, କାପାଳିକ ଓ ରାଜକୁମାରୀ ]

ଅସ୍ମମାନଙ୍କୁ ଅପରିମିତ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ପୃଥିବୀ-ପୃଷ୍ଠରୁ ଏ ପାପଭୂରି ଉଚ୍ଛ୍ୱାସ କରି ତାହାର ଶକ୍ତିର ଉତ୍ତରାଧିକାରୀ ହୋଇଅଛନ୍ତି । ଆପଣଙ୍କର ସ୍ୱଭାବ ସତ୍ ଏବଂ ତଦନୁଯାୟୀ କାପାଳିକ ଯେଉଁସକଳ ଅନ୍ୟାୟ ଓ ଅତ୍ୟାଚାରର ସୃଷ୍ଟି କରି-ଯାଇଛନ୍ତି, ତାହାର ନିରାକରଣ ତଥା ନ୍ୟାୟର ପ୍ରତିଷ୍ଠା ଦିଗରେ ଆପଣ ଅସ୍ମମାନଙ୍କୁ ବ୍ୟବହାର କରନ୍ତୁ । ଏଣିକି ଅସ୍ମେମାନେ ଆପଣଙ୍କ ସ୍ନେହ-ବନ୍ଧନରେ ଆଜ୍ଞାକାରୀ ହୋଇ ରହିବୁଁ—ଦାସତ୍ୱ-ବନ୍ଧନରେ ନୁହେଁ । ବର୍ତ୍ତମାନ ଅସ୍ମମାନଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ ଆଦେଶ କରନ୍ତୁ । ଜଗତରେ ଅସ୍ମମାନଙ୍କ ଶକ୍ତିର ବହିର୍ଭୂତ କୌଣସି କର୍ମ ନାହିଁ ।’

ପିଶାଚର କଥାରେ ମୁଁ ଯେତିକି ପ୍ରୀତ ହେଲି, ରାଜକୁମାରୀଙ୍କ ମୁଖପଙ୍କଜ ଅବଲୋକନ କରି ସେତିକି ମୁଗ୍ଧ ହେଲି । ମୋଦ୍ୱାରା ସେ ଅବଧାରିତ ମୃତ୍ୟୁମୁଖରୁ ରକ୍ଷା ପାଇଥିବାରୁ ତାହାଙ୍କ ହୃଦୟ ଯେ ଗଭୀର କୃତଜ୍ଞତାରେ ପୂରି ଯାଇଥିଲା, ଏହା ତାହାଙ୍କ ସଲଜ୍ଜ ମୁଖମଣ୍ଡଳରୁ ସ୍ପଷ୍ଟ ପ୍ରତିଭାତ ହେଉଥିଲା । ସେ ଧୀରବିନମ୍ର-ବଚନରେ କହିଲେ, ‘ହେ ବୀରୋତ୍ତମ, ଏ ନିଃସହାୟା ବାଳିକାକୁ ଆପଣ ଏ କ୍ରୂର ରାକ୍ଷସମୁଖରୁ ରକ୍ଷା କରିଅଛନ୍ତି । ଆପଣହିଁ ମୋର ରକ୍ଷକ ଓ ଦେବତା ଏବଂ ପିଶାଚର ବାକ୍ୟାନୁଯାୟୀ ମୋହର ଭାଗ୍ୟନିର୍ଦ୍ଦିଷ୍ଟ ପତି । ସୁତରାଂ ଏହି ମୁହୂର୍ତ୍ତରୁ ମୁଁ ଆପଣଙ୍କର ।’

ରାଜକୁମାରୀଙ୍କ ଅମୃତମୟୀ ବାଣୀ ଶ୍ରବଣ କରି ମୋହର ହୃଦୟର ଭାବରାଜି ଉଦ୍‌ବେଳିତ ହୋଇପଡ଼ିଲା । ମୁଁ ଭାବିଲି, ପୈଶାଚିକ ଶକ୍ତି ସାହାଯ୍ୟରେ ଏ ସୁକୁମାରୀଙ୍କ ସହ କୌଣସି ଅଜ୍ଞାତ ସୁଦୂର ସୁରମ୍ୟ ପ୍ରଦେଶକୁ ଗମନ କରି ସେଠାରେ

ଚିରକାଳ ପାଇଁ ମୋହର ଅମର କଳଙ୍କ ସୃଷ୍ଟି କରିବ । କିନ୍ତୁ ହଠାତ୍ ଆପଣଙ୍କ ଅନ୍ୱେଷଣରୁ କ୍ଷାନ୍ତ ହୋଇ ଆତ୍ମସୁଖରେ ଲିପ୍ତ ରହିଲେ ମୋହର ନିଶ୍ଚୟ ଦୁର୍ନାମ ହେବ ଏବଂ କୁମାରୀଙ୍କ ନିରୁଦ୍ଦେଶ ଫଳରେ ତାହାଙ୍କ ପିତାମାତାଙ୍କର ଗଭୀର ଦୁଃଖ ଜାତ ହେବ, ଏହି ଆଶଙ୍କା ଏକାଦିକ୍ରମେ ମନମଧ୍ୟରେ ପ୍ରବେଶ କରି ମୋତେ ଏଥିରୁ କ୍ଷାନ୍ତ କରାଇଦେଲା । ସୁତରାଂ ମୁଁ ନିଶ୍ଚୟ କଲି ଯେ, ରାଜକୁମାରୀଙ୍କୁ ତାହାଙ୍କ ପ୍ରାସାଦକୁ ପ୍ରେରଣ କରାଇ ଯଥୋଚିତ ଭାବରେ କଳିଙ୍ଗ ରାଜ୍ୟର ମଙ୍ଗଳ ସାଧନପୂର୍ବକ ସମ୍ମାନସହକାରେ ରାଜଦମ୍ପତିଙ୍କ ପାଣି-ପ୍ରାର୍ଥନା କରିବି ।

ମୋହର ପ୍ରତିଜ୍ଞା ରାଜକୁମାରୀଙ୍କ ନିକଟରେ ପ୍ରକାଶ କଲି ଏବଂ ତାହାଙ୍କୁ ଆଶ୍ୱାସନା ଦେଇ କହିଲି ଯେ, ମୁଁ ଯଦି ତାହାଙ୍କର ବାଧିନର୍ଦ୍ଦିଷ୍ଟ ପତି, ତେବେ ଉପଯୁକ୍ତ ଗୌରବ ପ୍ରଦର୍ଶନପୂର୍ବକ ପିତାମାତାଙ୍କ ସ୍ୱୀକୃତିରେ ତାହାଙ୍କୁ ଲାଭ କରିବି । ସେ ବର୍ତ୍ତମାନ ପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କରି ଧୈର୍ଯ୍ୟସହକାରେ ଅପେକ୍ଷା କରିବା ବିଧେୟ । ରାଜକୁମାରୀ ଏଥିରେ ସମ୍ମତା ହେଲେ । ଉଭୟେ ପରସ୍ପରକୁ ଯଥୋପଯୁକ୍ତ ସମ୍ଭାଷଣଦ୍ୱାରା ପ୍ରୀତିଜ୍ଞାପନ କରିସାରିବା ପରେ କୁମାରୀଙ୍କୁ ସ୍ୱସ୍ଥାନରେ ଅବସ୍ଥାପିତ କରିଆସିବା ନିମିତ୍ତ ମୁଁ ପିଶାଚକୁ ଆଦେଶ କଲି ।

ମୋହର ଆଦେଶ ପାଳନ କରିବା ନିମିତ୍ତ ତାହାକୁ କେତୋଟି ମୂହୂର୍ତ୍ତରୁ ବେଶୀ ସମୟ ଲାଗିଲା ନାହିଁ । ମୁଁ ଏକାକୀ ଉପବେଶନ କରି ଜୀବନର ଏ ବିଚିତ୍ର ଅନୁଭୂତି ସମ୍ବନ୍ଧରେ ଚିନ୍ତା କରିବାକୁ ଯାଉଛି, ପିଶାଚ ପୁଣି ମୋ ସମ୍ମୁଖରେ ଦଣ୍ଡାୟମାନ ହୋଇ କହିଲା, 'ହେ ବୀରାଗ୍ରଣୀ, କିଛି ସମୟ ପରେ ଆପଣଙ୍କୁ ଏ ସମସ୍ତ ଘଟଣା ମିଥ୍ୟା-ସ୍ୱପ୍ନବତ୍ ପ୍ରତୀୟମାନ ହେବ । କିନ୍ତୁ

ବାସ୍ତବରେ ଏହା ସ୍ୱପ୍ନ ନୁହେଁ, ସତ୍ୟ । ନିଦ୍ରାବସ୍ଥାରେ ଏହାର ପ୍ରାରମ୍ଭ ଓ ଶେଷ ହୋଇଥିବାରୁ ସେହିପରି ପ୍ରତୀତ ହେବା ସ୍ୱାଭାବିକ । ତେଣୁ ମୁଁ ଗୋଟିଏ ମନ୍ତ୍ର ଦେଉଛି; ତାହା ସ୍ମରଣ ରଖନ୍ତୁ । ଏ ମନ୍ତ୍ର ତିନିବାର ଉଚ୍ଚାରଣ କଲେ ଆମ୍ଭେମାନେ ଆପଣଙ୍କ ନିକଟରେ ଉପସ୍ଥିତ ହୋଇ, ଯାହା ଆଦେଶ କରିବେ, ତାହା ସାଧନ କରିବୁଁ । ମନ୍ତ୍ରଟି 'ପିଶାଚ'ର ବିଲୋମ—ଚଶାପି, ଚଶାପି, ଚଶାପି । ମୋ କଥାର ପ୍ରମାଣ ସ୍ୱରୂପ ଆପଣ ଦେଖିବେ, ପ୍ରଭାତରେ ସୁପ୍ତୋତ୍‌ଥିତ ହେଲା ବେଳକୁ ଆପଣ ହାତରେ ଗୋଟିଏ ନରଖର୍ପର ଧରିଥିବେ ।'

ବାସ୍ତବିକ ତାହାହିଁ ଘଟିଥିଲା । ପ୍ରଭାତରେ ମୁଁ ଅତି ଅବଶଭାବରେ ଉଠି ଦେଖିଲି, ମୋହର ଦକ୍ଷିଣ ହସ୍ତରେ ଗୋଟାଏ ନରଖର୍ପର । ନିକଟରେ ହୋମକୁଣ୍ଡ ବା କାପାଳିକର ମୃତଦେହର କୌଣସି ଚିହ୍ନ ନାହିଁ । ଓଃ, କି ଦୁଃସ୍ୱପ୍ନ ! ମୁଁ ପିଶାଚ କଥାର ସତ୍ୟତା ସେହିଠାରେ ପରୀକ୍ଷା କରିବାପାଇଁ ଇଚ୍ଛା କଲି; କିନ୍ତୁ ହା ଦୁର୍ଦ୍ଦୈବ ! ମନ୍ତ୍ର ବିସ୍ମରଣ ହୋଇଯାଇଛି । ସକଳ ପ୍ରକାର ଚେଷ୍ଟାସତ୍ତ୍ୱେ ତାହା ଅଉ ସ୍ମୃତିପଥରେ ଜାଗ୍ରତ ହେଲା ନାହିଁ । ସୁତରାଂ ଘଟନାଚକ୍ରରେ ତାହା ସ୍ୱତଃ ମନରେ ଜାଗରିତ ନ ହେବା ଯାଏ ସେ ଇଚ୍ଛା ତ୍ୟାଗ କରିବାକୁ ବାଧ୍ୟ ହେଲି ।

କିଛି ସମୟ ପରେ ମୁଁ ନଗରମଧ୍ୟରେ ପ୍ରବେଶ କଲି । ସେତେବେଳେ ସେଠାରେ ସର୍ବତ୍ର ଗୋଟାଏ ଅସ୍ୱାଭାବିକ ପରିସ୍ଥିତି ଉପୁଜିଥିଲା ଭଳି ବୋଧ ହେଲା । ନାଗରିକଗଣ ଭୀତତ୍ରସ୍ତଭାବରେ ନିଜ ନିଜର ମୂଲ୍ୟବାନ୍ ସାମଗ୍ରୀ ଓ ରମଣୀମାନଙ୍କୁ ନିରାପଦ ସ୍ଥାନକୁ ଅନ୍ତର କରିବାରେ ବ୍ୟସ୍ତ । ସୈନ୍ୟଗଣ ବିଭିନ୍ନ ଦିଗରେ ସଞ୍ଚରମାଣ; ପଲ୍ଲୀବାସିଗଣ ସ୍ରୋତଗତିରେ ପ୍ରାଣଭୟରେ

ନଗରୀମଧ୍ୟକୁ ପ୍ରଧାବିତ । ଏ ଅବସ୍ଥା ଦେଖି ମୁଁ ଅନୁସନ୍ଧାନ କରି ବୁଝିଲି ଯେ, ଅନ୍ଧ୍ର ଦେଶର ରାଜା ଜୟସିଂହ ବିଶ୍ୱାସଘାତକ ଭାବରେ କଳିଙ୍ଗ ରାଜ୍ୟ ଆକ୍ରମଣ କରିଛନ୍ତି । ଏ ସମ୍ବାଦ ପାଇବାମାତ୍ରେ ରାଜା ଦୂତ ପ୍ରେରଣ କରି ମିତ୍ରରାଜାମାନଙ୍କୁ ଆହ୍ୱାନ କରିବା ସଙ୍ଗେ ସଙ୍ଗେ କଳିଙ୍ଗନଗରୀ-ରକ୍ଷାର ବ୍ୟବସ୍ଥା ପାଇଁ ଆଦେଶ କରିଛନ୍ତି । ମିତ୍ରପକ୍ଷମାନଙ୍କର ଆଗମନ ପର୍ଯ୍ୟନ୍ତ ନଗରୀ ଅବରୁଦ୍ଧ ଅବସ୍ଥାରେହିଁ ରହିବା ନିମିତ୍ତ ସ୍ଥିର କରାଯାଇଛି । ଏ କଥା ଶୁଣି ମୁଁ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ମୋତେ ଦୁର୍ଗ ପ୍ରତିରୋଧ କାର୍ଯ୍ୟରେ ବ୍ୟବହାର କରିବା ପାଇଁ ଅନୁରୋଧ କଲି । ଅତି ଅଳ୍ପ କାଳପରେ ଜୟସିଂହ ଏକ ବିଶାଳ ସେନାସହ ପଥମଧ୍ୟରେ ସମସ୍ତ ଗ୍ରାମନଗର ଧ୍ୱଂସ କରି କଳିଙ୍ଗନଗର ଅବରୋଧ କଲେ । ଏତିକିବେଳେ ମୁଁ ଭାବିଲି—ହାୟ, ପିଶାଚର ମନ୍ତ୍ରଟି ସ୍ମରଣ ହୁଅନ୍ତା କି ।

ଏହାପରେ ଅବରୁଦ୍ଧ ଅବସ୍ଥାରେ ମାସାଧିକ କାଳ ଅତୀତ ହେଲା । କ୍ରମେ ନଗରମଧ୍ୟରେ ଖାଦ୍ୟ ଓ ଜଳର ଅଭାବ ହୋଇ ଆସିଲା । ରାଜା ଏଥିରେ ବିଚଳିତ ହୋଇ ଦୁର୍ଗର ଅଧିଷ୍ଠାତ୍ରୀ ଦେବୀଙ୍କ ଶରଣାପନ୍ନ ହେବାପାଇଁ ରାଣୀ ଓ ରାଜକୁମାରୀଙ୍କ ସହିତ ବାଜେ ଗଲେ । ମୁଁ ସୈନିକଭାବରେ ଯଥାସ୍ଥାନରେ ଦୁର୍ଗରକ୍ଷା କାର୍ଯ୍ୟରେ ନିଯୁକ୍ତ ଥିଲି । ରାଜାଙ୍କର ଏ ଯାତ୍ରାମଧ୍ୟରେ ଅକସ୍ମାତ୍ ରାଜକୁମାରୀଙ୍କ ମୁଖପଦ୍ମ ମୋହର ଦୃଷ୍ଟିଗୋଚର ହୁଅନ୍ତେ ହଠାତ୍ ମାନସପଟରେ ପୂର୍ବ ସ୍ୱପ୍ନବୃତ୍ତାନ୍ତ ଜାଗରିତ ହୋଇ ଉଠିଲା । କ୍ରମେ ସ୍ୱପ୍ନର ସମସ୍ତ ଘଟନା ଓ ଉକ୍ତ ପ୍ରତିଜ୍ଞା ସ୍ୱତଃ ଉଦ୍ଭାସିତ ହୋଇ ପଡ଼ିଲା— ତାହା ସହିତ ସେହି ପିଶାଚପ୍ରଦତ୍ତ ମନ୍ତ୍ର ମଧ୍ୟ ।

ମୁଁ ପାଗଳଙ୍କ ପରି ରାଜାଙ୍କ ସମ୍ମୁଖକୁ ଦୌଡ଼ିଯାଇ ନିବେଦନ କଲି 'ମହାରାଜ ! ଆଦେଶ କରନ୍ତୁ, ଅଧୀନ ଏକାକୀ ଶତ୍ରୁସୈନ୍ୟ-ସାଗରକୁ ମନ୍ଥନ କରିଦେଇ ଆସିବ ।'

ମୋହର ମସ୍ତିଷ୍କବିକାର ଘଟିଛି, ରାଜା ଏ କଥା ଅପାତତଃ ମନେ କଲେ ମଧ୍ୟ ମୋତେ ଅନୁମତି ଦେଲେ । କାରଣ ଶତ୍ରୁ ସହିତ ସଂଗ୍ରାମ କରିବାକୁ ଅଗ୍ରସର ହେଲାବେଳେ ଗୋଟାଏ ସୈନ୍ୟର ପାର୍ଥକ୍ୟ କିଛି ନୁହେଁ ।

ସେଦିନର ରାତ୍ରିଟି ମୋହର ବିଗତ ସ୍ୱପ୍ନରାଜି ଅପେକ୍ଷା ଅଧିକ ତମସାଚ୍ଛନ୍ନ ଏବଂ ବାତ୍ୟାବିକ୍ଷୋଭିତ ହୋଇ ପଡ଼ିଥିଲା । ଶତ୍ରୁ ଦୁର୍ଗର ଚତୁର୍ଦ୍ଦିଗ ଅଧିକାର କରିଥିଲେ ମଧ୍ୟ ଶ୍ମଶାନଭୂମି ନିର୍ଜନ ଥିଲା । ମୁଁ ଅତି ସାବଧାନରେ ସେଠାରେ ଉପସ୍ଥିତ ହୋଇ ମନ୍ତ୍ର ଉଚ୍ଚାରଣ କଲି, 'ଚଣାପି, ଚଣାପି, ଚଣାପି' । ସଙ୍ଗେ ସଙ୍ଗେ ଦେଖିଲି, ମୋ ସମ୍ମୁଖରେ ଅସଂଖ୍ୟ ପିଶାଚ ଚିତ୍କାର କରି ଉଠିଲେ—ଶତ, ସହସ୍ର ଲକ୍ଷ ସଂଖ୍ୟକ ପିଶାଚ ମୋତେ ସମ୍ମାନ ପ୍ରଦର୍ଶନ କରି ମୋ ଆଦେଶପାଇଁ ଅପେକ୍ଷା କରି ରହିଲେ । ମୁଁ ଆଦେଶ କଲି, 'ଏହି ମୁହୂର୍ତ୍ତରେ—ପଲ୍ଲୀ ମାନଙ୍କେ ତୁମ୍ଭେମାନେ ହୀନମତି ବିଶ୍ୱାସଘାତକ ଜୟସିଂହଙ୍କ ସୈନ୍ୟମାନଙ୍କୁ ଏପରି ଯାତନା ଦେବ ଯେ, ସେମାନେ ପ୍ରାଣଭୟରେ ପଳାୟନ କରିବେ ।' ପିଶାଚଗଣ ସମ୍ମତିସୂଚକ ଧ୍ୱନି କରି ମୁହୂର୍ତ୍ତିକମଧ୍ୟରେ ଅଦୃଶ୍ୟ ହୋଇଗଲେ ।

ମୁଁ ନଗରମଧ୍ୟକୁ ଫେରିଆସି ଶାନ୍ତିରେ ବିଶ୍ରାମ ନେଲି । ପ୍ରଭାତ ହେବା ପୂର୍ବରୁ ପ୍ରହରୀଗଣ ରାଜାଙ୍କୁ ଜଣାଇଲେ ଯେ, ଜୟସିଂହ ସସୈନ୍ୟ ପଳାୟନ କରିଛନ୍ତି, ଅଥଚ ସେମାନଙ୍କ ଶିବିର ପଡ଼ିରହିଛି । ଏ ସମ୍ବାଦରେ ରାଜାଙ୍କର ସନ୍ଦେହ ହେଲା । କାରଣ

ଜ୍ୟୋତିଷିଙ୍କ ଉପରେ ଆସ୍ଥା ସ୍ଥାପନ କରିବାର ସଦ୍ୟଫଳ ସେ ପାଇଛନ୍ତି । ମାତ୍ର ପରମୁହୂର୍ତ୍ତରେ ଗୁପ୍ତଚରଗଣ ଆସି ମଧ୍ୟ ସେହି ସମ୍ବାଦ ଦେଲେ । ସେମାନେ ବହୁ ଦୂର ପର୍ଯ୍ୟନ୍ତ ଅନୁସନ୍ଧାନ କଲେହେଁ କୌଣସିଠାରେ ଶତ୍ରୁସୈନ୍ୟର ଚିହ୍ନ ସୁଦ୍ଧା ପାଇଲେ ନାହିଁ । ସେମାନେ ଅସ୍ତ୍ରଶସ୍ତ୍ର ସହ ଶିବିର ପରିତ୍ୟାଗ କରି ପଳାୟନ କରିଥିଲେ ।

ପିଶାଚଗଣ କିପରିଭାବରେ ଏ ଦୁଃସାଧ୍ୟ କର୍ମ ସମ୍ପାଦନ କଲେ, ତାହା ମୋହର ସମ୍ପୂର୍ଣ୍ଣ ଅଜ୍ଞାତ । ସୁତରାଂ ରାଜା ଯେତେବେଳେ କୃତଜ୍ଞତାପୂର୍ଣ୍ଣ ଭାଷାରେ ସମସ୍ତ କଥା ଜାଣିଲେ, ସେତେବେଳେ ମୁଁ ମୋହର ପରିଚୟ, ସ୍ୱପ୍ନବିବରଣୀ, ପିଶାଚମନ୍ତ୍ର, ମନ୍ତ୍ରବିସ୍ମରଣ ଓ ରାଜକୁମାରୀଙ୍କ ଦର୍ଶନରେ ତାହାର ପୁନଃସ୍ମରଣ ଇତ୍ୟାଦି କଥା ପ୍ରକାଶ କଲି । ସମସ୍ତ ବୃତ୍ତାନ୍ତ ଶୁଣି ରାଜା ଅତି ଆନନ୍ଦସହକାରେ ସ୍ୱୀକାର କଲେ ଯେ, ପ୍ରଜାପତି ନିର୍ବନ୍ଧରେ ସେ ପ୍ରତିକୂଳ ହେବେ ନାହିଁ; ବରଂ ସଚ୍ଚରିତ୍ର ଓ ଦୈବୀଶକ୍ତିସମ୍ପନ୍ନ ଜଣେ ଯୁବକଙ୍କୁ ନିଜର ଜାମାତା ଭାବରେ ପାଇ ପ୍ରୀତ ହେବେ । ବନ୍ଧୁଗଣ, ଏହିପରିଭାବରେ ମୁଁ କଳିଙ୍ଗ-ରାଜକୁମାରୀ ସୁକୁମାରୀ କନକଲେଖାଙ୍କୁ ଲାଭ କଲି । ବର୍ତ୍ତମାନ ବିଶାଳ କଳିଙ୍ଗ ସେନା ଏଠାରେ ଉପସ୍ଥିତ । ଆପଣମାନେ ଇଚ୍ଛାନୁଯାୟୀ ସେମାନଙ୍କୁ ନିଜ କାର୍ଯ୍ୟରେ ଲଗାଇପାରନ୍ତି ।"

## ପ୍ରଶ୍ନ

୧ । ମନ୍ତ୍ରଗୁପ୍ତ କାହିଁକି ପିଶାଚର ଅନୁସରଣ କଲେ ? ସେ ଶ୍ମଶାନରେ ଉପସ୍ଥିତ ହୋଇ ଯେଉଁ ଦୃଶ୍ୟ ଦେଖିଲେ, ତାହା ନିଜ ଭାଷାରେ ବର୍ଣ୍ଣନା କର ।

୨ । ମନ୍ତ୍ରଗୁପ୍ତ କାହିଁକି କଳିଙ୍ଗ ସେନାଧ୍ୟକ୍ଷ ହେଲେ ଏବଂ କେଉଁ ଘଟଣାରେ ପିଶାଚପ୍ରଦତ୍ତ ମନ୍ତ୍ରଟି ତାଙ୍କର ସ୍ମରଣ ହେଲା ?

୩ । "ଯାଚକ କଦାପି ନିର୍ବାଚକ ହୋଇ ନ ପାରେ ।" "ସ୍ନେହ-ବନ୍ଧନରେ ଆଜ୍ଞାକାରୀ ହୋଇ ରହିବୁଁ—ଦାସତ୍ୱ-ବନ୍ଧନରେ ନୁହେଁ ।" ଏ ଦୁଇଟି କଥାର ସରଳାର୍ଥ ଲେଖ ।

୪ । ସେତୁଗର୍ଭ, ନୈଲିହାନଶକ୍ତି, ଅନ୍ତର୍ଦ୍ଧାନ, ନିର୍ବେଦ ଓ ନିର୍ବାକ୍, କାପାଳିକ, ଅପରିମିତ, ନିରାକରଣ, ପ୍ରତିଶ୍ରୁତ, ପାଣି-ପ୍ରାର୍ଥନା, ଉଦ୍‌ବେଳିତ—ଏଗୁଡ଼ିକର ଅର୍ଥ ଲେଖ ।

---

## ଉତ୍ତର ମେରୁର ଆବିଷ୍କାର

ଉତ୍ତର ଓ ଦକ୍ଷିଣ ମେରୁପ୍ରଦେଶ ଦୁଇଟିରେ ଶୈତ୍ୟର ପ୍ରକୋପ ସବୁଠାରୁ ଅଧିକ । ଅତିରିକ୍ତ ତୁଷାରପାତ ଓ ଅତି-ଶୀତଳ ଜଳବାୟୁ ଯୋଗୁ ଏ ଅଞ୍ଚଳରେ ଜୀବଜନ୍ତୁ ବାସ କରିବା ଅସମ୍ଭବ ନ ହେଲେହେଁ ଦୁଃସାଧ୍ୟ । ସହସ୍ର ସହସ୍ର ଯୋଜନ ବ୍ୟାପି ରହିଛି କେବଳ ବରଫର ଗୋଟାଏ ଚିରନ୍ତନ ଆସ୍ତରଣ । ପ୍ରାଣଧାରଣ କରିବାକୁ ହେଲେ ଜୀବର ଯେଉଁ ପରିମାଣରେ ଉତ୍ତାପ ଆବଶ୍ୟକ ହୁଏ, ତାହାର ଅଭାବହିଁ ଏ ଅଞ୍ଚଳକୁ ପ୍ରାୟ ଜୀବଜନ୍ତୁଶୂନ୍ୟ କରିଦେଇଛି ।

ଉତ୍ତର ମେରୁର ବହୁ ଭାଗ ମହାସାଗରବେଷ୍ଟିତ; ମାତ୍ର ଦକ୍ଷିଣ ମେରୁର ଅବସ୍ଥିତି ଗୋଟାଏ ପ୍ରକାଣ୍ଡ ସ୍ଥଳଭାଗ ମଧ୍ୟରେ । ଏହି ଦୁଇ ଅଞ୍ଚଳରେ ତୁଷାର ଝଡ଼, ସୁବିଶାଳ ବରଫ ସ୍ତୂପମାଳା ଏବଂ ଉଦ୍ଭିଦହୀନତା ଭିତରେ ବସବାସ କରି ରହିବା ମନୁଷ୍ୟ ପକ୍ଷରେ ଏକ ବିଷମ ସମସ୍ୟା । ଉଭୟ ମେରୁରେ ଏକାଦିକ୍ରମେ

ଛଅ ମାସ ଦିନ, ଛଅ ମାସ ରାତି ହୁଏ । ଦିନ ଛଅ ମାସମଧ୍ୟରୁ ପ୍ରଥମ ଓ ଶେଷ ଭାଗରେ ସୂର୍ଯ୍ୟ ଦିଗ୍‌ବଳୟ ତଳେ ରହିବା ଫଳରେ କେବଳ କ୍ଷୀଣ ଆଲୋକ ଦେଖାଯାଇଥାଏ ଏବଂ ମଧ୍ୟ ଭାଗରେ ସୂର୍ଯ୍ୟ ଦିଗ୍‌ବଳୟର କେବଳ ଅଳ୍ପ ଉପରେ ଦେଖା ଦେଇ ପୁଣି ତଳକୁ ଖସି ଆସେ । ଛଅ ମାସ ରାତିମଧ୍ୟରୁ ପ୍ରଥମ ଓ ଶେଷ ଭାଗରେ କେତେକ ଦିନ ନିମନ୍ତେ ଅତି କ୍ଷୀଣ ଆଲୋକ ପରିଦୃଷ୍ଟ ହୁଏ । ମାତ୍ର ମଧ୍ୟ ଭାଗରେ ରାତି ପ୍ରାୟ ପାଞ୍ଚ ମାସ ପର୍ଯ୍ୟନ୍ତ ଲାଗି ରହେ । ସୂର୍ଯ୍ୟ ଦେଖାଯାଉଥିବା ସମୟ ଭିତରେ ତୁଷାରରାଶି ସାମାନ୍ୟ ଦ୍ରବୀଭୂତ ହୁଏ ଏବଂ ସାମୁଦ୍ରିକ ସ୍ରୋତରେ ବିରାଟ ବରଫ-ସ୍ତୂପଗୁଡ଼ିକ ବହୁ ଦୂରକୁ ଭାସିଯାଏ । ଏହି ସ୍ତୂପଗୁଡ଼ିକର ସମ୍ମୁଖୀନ ହେଲେ ବୃହଦାକାର ଜାହାଜ ମଧ୍ୟ ବିପଦ୍‌ଗ୍ରସ୍ତ ହୁଏ ।

ମନୁଷ୍ୟ ସକଳ ପ୍ରାକୃତିକ ବାଧାବିଘ୍ନ ଅତିକ୍ରମ କରି ଶେଷରେ ଏ ଅଞ୍ଚଳକୁ ଆସିପାରିଛି ଏବଂ ଜଗତକୁ ସ୍ପଷ୍ଟ ଦେଖାଇଦେଇଛି ଯେ, ପ୍ରତିକୂଳ ପ୍ରକୃତିକୁ ମଧ୍ୟ ଉଦ୍ୟମ ଓ ଅଧ୍ୟବସାୟ ବଳରେ ବଶୀଭୂତ କରାଯାଇପାରେ । ଉତ୍ତରମେରୁ ମନୁଷ୍ୟର ବୁଦ୍ଧି ଓ ଅଧ୍ୟବସାୟ ନିକଟରେ କିପରି ପରାଜୟ ସ୍ୱୀକାର କରିଛି, ତାହାର ସଂକ୍ଷିପ୍ତ ବିବରଣ ଏଠାରେ ପ୍ରଦତ୍ତ ହେଉଅଛି ।

ଫ୍ରିଜଫ୍ ନାନ୍‌ସେନ୍ ନାମକ ନରଓଏ ଦେଶର ଜଣେକ ନାବିକ ୧୮୯୩ ଖ୍ରୀଷ୍ଟାବ୍ଦରେ ଉତ୍ତରମେରୁ ଅଭିଯାନରେ ବାହାରି ପରବର୍ତ୍ତୀ ଅଭିଯାତ୍ରୀମାନଙ୍କର ପଥପ୍ରଦର୍ଶକ ହେଲେ । ନଅ ବର୍ଷ ପୂର୍ବରୁ ସେ ମେରୁନିକଟବର୍ତ୍ତୀ ଗ୍ରୀନ୍‌ଲ୍ୟାଣ୍ଡକୁ ଯାତ୍ରା କରି ତହିଁରେ ଏସ୍କିମୋମାନଙ୍କ ସଙ୍ଗେ ବାସ କରିଥିଲେ । ଏହାଦ୍ୱାରା ସେ ତୁଷାରାଚ୍ଛନ୍ନ ପ୍ରଦେଶରେ ବାସ କରିବାକୁ ହେଲେ କିପରି ଚଳିବା

ଆବଶ୍ୟକ, ତାହାର ପ୍ରତ୍ୟକ୍ଷ ଅନୁଭୂତି ଲାଭ କରିଥିଲେ ଓ ନିଜକୁ ମେରୁ ଅଞ୍ଚଳର ଜଳବାୟୁରେ ଅଭ୍ୟସ୍ତ କରାଇ ନେଇଥିଲେ ।

ଏହାପରେ ତାଙ୍କ ନିର୍ଦ୍ଦେଶରେ ଫ୍ରାମ୍ ନାମକ ଗୋଟିଏ ସୁଦୃଢ଼ ପୋତ ନିର୍ମିତ ହେଲା । ଏହାର ନିମ୍ନଭାଗକୁ ଅତ୍ୟନ୍ତ ମସୃଣ



[ ନାନ୍‌ସେନ୍‌ଙ୍କ ଜାହାଜ ]

କରାଯାଇ ଚତୁଷ୍ପାର୍ଶ୍ୱବର୍ତ୍ତୀ ବରଫର ଚାପରୁ ରକ୍ଷା କରିବା ଲାଗି ପାର୍ଶ୍ୱଗୁଡ଼ିକୁ ଅତି ଦୃଢ଼ଭାବରେ ନିର୍ମାଣ କରାଗଲା । ମେରୁ ଅଞ୍ଚଳରେ ସାମୁଦ୍ରିକ ସ୍ରୋତଗୁଡ଼ିକର ଗତି ନିର୍ଣ୍ଣୟ କରି ନାନ୍‌ସେନ୍ ବୁଝିଥିଲେ ଯେ, ସାଇବେରିଆର ଉପକୂଳ ବାଟେ ଗୋଟିଏ ସ୍ରୋତ ମେରୁ ଅଭିମୁଖରେ ଗତି କରେ ଏବଂ ଉତ୍ତର ମେରୁ ଅତିକ୍ରମ କଲାପରେ ତାହା ପୁଣି ଆଟଲାଣ୍ଟିକ ମହାସାଗର ବାଟେ ନରୱେ ଉପକୂଳକୁ ଫେରିଆସେ । ତାଙ୍କର ଏହି ମତକୁ

ଅନ୍ୟ ଅବିଷ୍କର୍ତ୍ତାମାନେ ସ୍ୱୀକାର କରି ନ ଥିଲେ। ତଥାପି ସେ ନିଜ ବିଶ୍ୱାସରେ ଅଟଳ ରହିଲେ ।

୧୮୯୩ ଖ୍ରୀଷ୍ଟାବ୍ଦର ଜୁନ୍ ୨୪ ତାରିଖରେ ବାର ଜଣ ବୈଜ୍ଞାନିକ ବନ୍ଧୁଙ୍କ ସଙ୍ଗେ ଖ୍ରୀଷ୍ଟିଅନିଆ ବନ୍ଦରରୁ ତାଙ୍କର ଯାତ୍ରା ଆରମ୍ଭ ହେଲା। ଉତ୍ତର ସାଗରରେ ଅଗ୍ରସର ହୋଇ ସେ ନବ୍‌-ଜେମଲା ଦ୍ୱୀପ ନିକଟରେ କୁହୁଡ଼ିପୂର୍ଣ୍ଣ ବରଫାଚ୍ଛନ୍ନ ଅଞ୍ଚଳର ସମ୍ମୁଖୀନ ହେଲେ । ସେପ୍ଟେମ୍ବର ମାସର ପ୍ରଥମ ଭାଗରେ ଏସିଆ ମହାଦେଶର ଉତ୍ତର ଶୀର୍ଷ ସୀମାରେ ଚେଲ୍‌ଉସ୍କିନ୍ ଅନ୍ତରୀପ ଅତିକ୍ରମ କରି ସେ ନିଜ ସାଇବେରିଆ ଦ୍ୱୀପପୁଞ୍ଜ ନିକଟରେ ପ୍ରବେଶ କଲେ । ମାତ୍ର ଶୀତର୍ତ୍ତୁ ଯୋଗୁଁ ତାଙ୍କ ଜାହାଜ ଦୀର୍ଘ କାଳ ସେଠାରେ ଅବଦ୍ଧ ହୋଇ ରହିବାକୁ ବାଧ୍ୟ ହେଲା । ସୌଭାଗ୍ୟ-ବଶତଃ ଧନେ ସାମୁଦ୍ରିକ ସ୍ରୋତରେ ଜାହାଜଟି ଧୀରେ ଧୀରେ ଅଗ୍ରସର ହେବାକୁ ଆରମ୍ଭ କଲା ଏବଂ ତାଙ୍କ ବନ୍ଧୁମାନେ ବୈଜ୍ଞା-ନିକ ଗବେଷଣା ଓ ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲେ । ମଝିରେ ମଝିରେ ଶ୍ୱେତ ଭଲ୍ଲୁକମାନଙ୍କର ଆକସ୍ମିକ ଆକ୍ରମଣ ପ୍ରତି ସତର୍କ ହେବାକୁ ପଡ଼ୁଥାଏ । ନାନ୍‌ସେନ୍ ହିସାବ କରି ଦେଖିଲେ ଯେ, ଜାହାଜ ଏହିପରି ଗତିରେ ଅଗ୍ରସର ହେଲେ ମେରୁରେ ପହଞ୍ଚିବାକୁ ପ୍ରାୟ ଚାରି ବର୍ଷ ଓ ଫେରିବାକୁ ପ୍ରାୟ ଆଠବର୍ଷ ଲାଗିଯିବ । ମାତ୍ର ସେ ଏଥିରେ ହତାଶ ହେଲେ ନାହିଁ । ତାଙ୍କର ହୃଦୟ ସକଳ ବିପଦ ମଧ୍ୟରେ ପୂର୍ବପରି ପ୍ରସନ୍ନ ଏବଂ ବଦନମଣ୍ଡଳ ଆଶା ଓ ଆନନ୍ଦରେ ଉଜ୍ଜ୍ୱଳ ହୋଇ ରହିଲା ।

୧୮୯୫ ଖ୍ରୀଷ୍ଟାବ୍ଦରେ 'ଫ୍ରାମ୍' ସମୁଦ୍ର ସ୍ରୋତର ଶୀର୍ଷତମ ସ୍ଥଳରେ ପ୍ରବିଷ୍ଟ ହେଲା । ଏଠାରେ ଜାହାଜକୁ ତ୍ୟାଗ କରି ଜୋହାନ୍‌ସେନ୍ ନାମକ ଜଣେ ବିଶ୍ୱସ୍ତ ସହଚରଙ୍କ ସହିତ

ନାନ୍‌ସେନ୍ ପଦବ୍ରଜରେ ମେରୁ ଅଡ଼କୁ ଅଗ୍ରସର ହେଲେ । ତାଙ୍କର ପୂର୍ବବର୍ତ୍ତୀ ଅଦ୍ୱେଷୀରକଙ୍କ ମଧ୍ୟରୁ କେହି ଏହି ପ୍ରଦେଶରୁ ବିଫଳମନୋରଥ ହୋଇ ଫେରି ଆସିଥିଲେ, କେହି ବା ଅନ୍ତିମ ପ୍ରୟାସ କରି ମରଣ ବରଣ କରିଥିଲେ। ମାତ୍ର ନିର୍ଭୀକ ନାନ୍‌ସେନ କୃତାନ୍ତର କରାଳ କବଳକୁ ଭ୍ରୂକ୍ଷେପ ନ କରି ଦୁର୍ବାର କାମନା ପୋଷଣପୂର୍ବକ ଅଗ୍ରସର ହେବାକୁ ଲାଗିଲେ । ସହସ୍ର ସହସ୍ର ବରଫସ୍ତୂପ ପଥରେ ମୃତ୍ୟୁଦେବତା ସତେ ଯେପରି ଅଟ୍ଟହାସ କରି ଆହ୍ୱାନ କରୁଥାଏ ।

ସଙ୍ଗରେ ଗୋଟିଏ ସ୍ଲେଜ୍‌ଗାଡ଼ି, ଗାଡ଼ିଟିକୁ ଟାଣିବା ଲାଗି କେତୋଟି କୁକୁର ଓ ଶହେ ଦିନର ଖାଦ୍ୟ—ଦୁଇଟି ଯାତ୍ରୀଙ୍କର ଏତିକିମାତ୍ର ଉପକରଣ । କିନ୍ତୁ ଲକ୍ଷ୍ୟସିଦ୍ଧି ଲାଗି ହୃଦୟର ପ୍ରଧାନ ସମ୍ବଳ ହୋଇଛି ଉପସ୍ଥିତ-ବୁଦ୍ଧିପ୍ରୟୋଗ, ଅଦମ୍ୟ ଉଦ୍ୟମ ଓ ନିରବଚ୍ଛିନ୍ନ ଅଧ୍ୟବସାୟ । ଶତ ଶତ ମାଇଲ ଅତିକ୍ରମ କରି ନାନ୍‌ସେନ୍ ଓ ତାହାଙ୍କର ବନ୍ଧୁ ଅତିରିକ୍ତ ଶାରୀରିକ କ୍ଳାନ୍ତି ଓ ଶକ୍ତି ଅନୁଭୂତିର ସମ୍ମୁଖୀନ ହେଲେ; ତଥାପି ସେମାନଙ୍କର ଆଶା ଓ ଉଦ୍ୟମର ଲବମାତ୍ର ହ୍ରାସ ହୋଇ ନ ଥିଲା । ତାପରେ ଆରମ୍ଭ ହେଲା ତୁଷାର ଝଡ଼ । ମାତ୍ର ଲକ୍ଷ୍ୟ ଯେ ବହୁ ଦୂରରେ । ଆହୁରି ୨୬୧ ମାଇଲ୍ ଅତିକ୍ରମ କରିବାକୁ ପଡ଼ିବ ।

ନାନ୍‌ସେନ୍ ଅଗ୍ରସର ହେବାକୁ ଲାଗିଲେ; ମାତ୍ର ଦୁର୍ଭାଗ୍ୟବଶତଃ ଏତିକିବେଳକୁ ସଞ୍ଚିତ ଖାଦ୍ୟ ଶେଷ ହୋଇ ଆସିଲା । କୃତାନ୍ତର ବିଭୀଷିକା ଭୀଷଣ ରୂପରେ ଦେଖାଦେଲା । ନାନ୍‌ସେନ୍ ଓ ଜୋହାନ୍‌ସେନ୍ ପୀଡ଼ାଗ୍ରସ୍ତ ହୋଇପଡ଼ିଲେ । ସୁତରାଂ ସେମାନେ କେତେକ ସପ୍ତାହ ପରେ ଫେରିଆସି ଫ୍ରାଞ୍ଜ-

ଜୋସେଫଲ୍ୟାଣ୍ଡରେ ଆଶ୍ରୟ ନେଲେ । ସେଠାରେ ସେମାନେ କେବଳ ଶିକାର-ଲବ୍‌ଧ ଭଲ୍ଲୁକ ଓ ସିନ୍ଧୁଘୋଟକ ମାଂସରେ ଜୀବନ-ରକ୍ଷା କରିବାକୁ ଲାଗିଲେ । ସେତେବେଳକୁ ୧୮୯୬ ଖ୍ରୀଷ୍ଟାବ୍ଦର ବସନ୍ତ କାଳ । ଏ ସୀମାହୀନ ରାଜ୍ୟରେ ଦିନେ ଅକସ୍ମାତ୍ ଭାବରେ କୁକୁର-ଶବ୍ଦ ଓ ମନୁଷ୍ୟ କଣ୍ଠସ୍ୱର ଶ୍ରୁତିଗୋଚର ହେଲା । କ୍ରମେ ସେମାନେ ସେହି ଶବ୍ଦର ଅନୁସରଣରେ ଅଗ୍ରସର ହୋଇ ଇଂରେଜ ଅବିଷ୍କାରକ ଫ୍ରେଡ଼୍‌ରିକ୍ ଜାକ୍‌ସନଙ୍କ ପରିଚାଳିତ ମେରୁ-ଅଭିଯାନକାରୀମାନଙ୍କୁ ଦେଖିବାକୁ ପାଇ ସେମାନଙ୍କ ସଙ୍ଗେ ପ୍ରତ୍ୟାବର୍ତ୍ତନ କଲେ ।

ସ୍ୱଦେଶକୁ ଫେରିବା ପରେ ନାନ୍‌ସେନ୍ ବହୁ ଅଭିନନ୍ଦନ ଲାଭ କରିଥିଲେ । ବାସ୍ତବରେ ତାଙ୍କର ମହନୀୟ ଉଦ୍ୟମ ପରବର୍ତ୍ତୀ ଅବିଷ୍କାରକମାନଙ୍କର ଅଭିଯାନ-ପଥ ପରିଷ୍କାର କରି ଦେଇଥିଲା ।

ପୁଣି କେତେକ ବର୍ଷପରେ କମାଣ୍ଡର ପିଅରି ଉତ୍ତର ମେରୁ ଅଭିଯାନ ଆରମ୍ଭ କଲେ । ସେ ଉତ୍ତର ଆମେରିକାରୁ ଯାତ୍ରା କରି ଗ୍ରୀନ୍‌ଲ୍ୟାଣ୍ଡର ଉପକୂଳରେ ତାଙ୍କ ସଙ୍ଗୀମାନଙ୍କ ସଙ୍ଗେ ଜାହାଜ ଚଳାଇଥିଲେ ଏବଂ ଜଳସ୍ରୋତର ଅନୁକୂଳତା ଯୋଗୁଁ ଗ୍ରୀନ୍‌ଲ୍ୟାଣ୍ଡ ସୀମା ଅତିକ୍ରମ କରି ମେରୁସାଗରରେ ବହୁ ଦୂର ଅଗ୍ରସର ହୋଇଥିଲେ । ଶେଷରେ ସେ ନାନ୍‌ସେନ୍‌ଙ୍କ ଅନୁଭୂତିଗୁଡ଼ିକ ପଦେ ପଦେ ଅନୁସରଣ କରି ଏବଂ ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇ ୧୯୦୯ ଖ୍ରୀଷ୍ଟାବ୍ଦ ଏପ୍ରିଲ୍ ୬ ତାରିଖରେ ସଦଳବଳରେ ଉତ୍ତର ମେରୁରେ ପଦାର୍ପଣ କରି ବିଜୟ ବୈଜୟନ୍ତୀ ଉଡ଼ାଇ ପାରିଥିଲେ । ଏହି ଅଭିଯାନ ନିମିତ୍ତ ନାନ୍‌ସେନ୍ ଓ ପିଅରି ଏହି ଦୁହିଁଙ୍କ ନାମ ପୃଥିବୀର ଇତିହାସରେ ଅମରାକ୍ଷରରେ ଲିଖିତ ହୋଇ ରହିଅଛି ।

କମାଣ୍ଡର ପିଅରୀ ଉତ୍ତର ମେରୁ ବିଜୟ କରି ମଧ୍ୟ ସେଠାରେ ବେଶୀ ସମୟ ରହି ମେରୁ ଅଞ୍ଚଳର ସୁପୂର୍ଣ୍ଣାଙ୍ଗ ଭୌଗୋଳିକ ବିବରଣ ସଂଗ୍ରହ କରିବାକୁ ସମର୍ଥ ହୋଇ ପାରି ନ ଥିଲେ । ତେଣୁ ଚିରକାଳ ଜିଜ୍ଞାସୁ ଓ ଉଦ୍‌ଗୀବୁ ମାନବ ମେରୁର ପୂର୍ଣ୍ଣ ବିବରଣୀ ସଂଗ୍ରହ ନ କରିବା ପର୍ଯ୍ୟନ୍ତ ସନ୍ତୁଷ୍ଟ ହେଉନ୍ତି କେତେବେଳେ ? ମେରୁର ପାଣିପାଗ ନିର୍ଦ୍ଧାରଣ କରିବାକୁ ହେଲେ ଦୀର୍ଘକାଳ ସେଠାରେ ରହି ପୁଙ୍ଖାନୁପୁଙ୍ଖଭାବରେ ସମସ୍ତ ତଥ୍ୟ ହୃଦୟଙ୍ଗମ କରିବାକୁ



[ କମାଣ୍ଡର ପିଅରୀ ]

ହେବ । ସୁତରାଂ ଏ ଦିଗରେ ପୁଣି ଉଦ୍ୟମ କରି ରୁଷିଆର ବୈଜ୍ଞାନିକମାନେ ସିଦ୍ଧିଲାଭ କଲେ । ରୁଷିଆର ଅଭିଯାତ୍ରୀଗଣ ଅକାଳିବିମାନରେ ବାରମ୍ବାର ସେଠାକୁ ଯାଇ ସମସ୍ତ ବିବରଣୀ ଜଗତକୁ ଜଣାଇଦେବାରେ କୃତକାର୍ଯ୍ୟ ହୋଇଅଛନ୍ତି ।

ଏହି ଅଭିଯାନକାରୀମାନେ ବୈଜ୍ଞାନିକ ପର୍ଯ୍ୟବେକ୍ଷଣର ପୂର୍ଣ୍ଣସୁଯୋଗ ନେବାଲାଗି ଉତ୍ତର ମେରୁଠାରୁ ୬୦୦ ମାଇଲ ଦୂରବର୍ତ୍ତୀ ରୁଡ଼ଲ୍‌ଫ ଦ୍ୱୀପରେ ଗୋଟିଏ ଅସ୍ଥାୟୀ କେନ୍ଦ୍ର ଖୋଲି କ୍ଷୁଦ୍ର ଗ୍ରାମଟିଏ ସ୍ଥାପନ କଲେ । ଗ୍ରାମଟିରେ କେତେକ ତମ୍ବୁର ସମାବେଶ ମାତ୍ର ଏବଂ ସେଥିଭିତରେ ସ୍ଥାପନ କରାଯାଇଥିଲା ଗୋଟିଏ ବେତାରଯନ୍ତ୍ର ଓ ଗବେଷଣା କେନ୍ଦ୍ର ।

୧୯୩୭ ଖ୍ରୀଷ୍ଟାବ୍ଦର ମାର୍ଚ୍ଚ ମାସ ୨୨ ତାରିଖରେ ଗୁଟିଏ ଉଡ଼ାଜାହାଜ ମସ୍କୋରୁ ଯାତ୍ରା କରି ରଡ଼ଲ୍‌ଫ୍ ଦ୍ୱୀପରେ ଅବତରଣ କଲେ । ସେଥିମଧ୍ୟରୁ "ଏନ୍ ୧୬୬" ବିମାନଟି ପାଞ୍ଚଜଣ ଅଭିଯାତ୍ରୀ ନେଇ ନିବିଡ଼ ମେଘାଚ୍ଛନ୍ନ ମେରୁଉପରେ ଉଡ଼ି ଅସ୍ଥାୟୀ କେନ୍ଦ୍ରକୁ ଫେରି ପାରି ନ ଥିଲା । ଏହା ସେଠାରୁ ୭୫ ମାଇଲ ଦୂରବର୍ତ୍ତୀ ଗୋଟିଏ ବିରାଟ ବରଫ-ଭେଲାଉପରେ ଅବତରଣ କଲା । କିନ୍ତୁ ରଡ଼ଲ୍‌ଫ୍ କେନ୍ଦ୍ର ସହିତ ବେତାରଯନ୍ତ୍ରଦ୍ୱାରା ସମ୍ବାଦବିନିମୟ ବରାବର ହେଉଥାଏ । ସେହି ବର୍ଷ ମେ ମାସ ୨୨ ତାରିଖରେ 'ଏନ୍ ୧୭୦' ନାମାଙ୍କିତ ଗୋଟିଏ ବୃହତ୍ ବିମାନ ତେରଜଣ ଅଭିଯୋଗୀ ସହ ଅସ୍ଥାୟୀ କେନ୍ଦ୍ରରୁ ବାହାରି ମେରୁଉପରସ୍ଥ ଗୋଟିଏ ବିଶାଳ ବରଫ-ଭେଲା ଉପରେ ଅବତରଣ କଲା । ଉଡ୍ଡୋପିଆନଭ୍ ଏହି ବିମାନର ଚାଳକ ଏବଂ ସ୍ମିମିଡ୍ ଏହି ଅଭିଯାନର ନେତା ଥିଲେ ।

ବରଫ-ଭେଲାଉପରେ ବେତାର କେନ୍ଦ୍ରଟିଏ ଖୋଲାଗଲା ଏବଂ ସେଠାରେ ପାଞ୍ଚୋଟି ତମ୍ବୁ ପକାଇ ବୈଜ୍ଞାନିକମାନେ ପାଣିପାଗର ଅବସ୍ଥା ପର୍ଯ୍ୟବେକ୍ଷଣ କଲେ । ଏହାର ପାଞ୍ଚଦିନ ପରେ ଅବଶିଷ୍ଟ ତିନୋଟି ଉଡ଼ାଜାହାଜ ସେଠାରେ ଉପସ୍ଥିତ ହେଲା । ବୈଜ୍ଞାନିକମାନେ ସେଠାରେ କେତେ ସପ୍ତାହ ବାସ କରି ସବିଶେଷ ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲେ । ସେମାନେ ମେରୁରେ କ୍ରମପରିବର୍ତ୍ତିତ ପାଣିପାଗର ପୂର୍ଣ୍ଣ ବିବରଣ ଏବଂ ସମଗ୍ର ଭୂମଣ୍ଡଳଉପରେ ତାହାର କିପରି ପ୍ରଭାବ ପଡ଼ୁଛି, ସେହି ସମ୍ପର୍କରେ ଜଟିଳ ସମସ୍ୟାଗୁଡ଼ିକର ଗବେଷଣା କରି ଜଗଦ୍‌ବାସୀଙ୍କୁ ଜଣାଇ ଦେଇଅଛନ୍ତି ।

ସେମାନଙ୍କ ପ୍ରଦତ୍ତ ବିବରଣୀରୁ ଜଣାଯାଏ ଯେ, ମେରୁରେ ଜଳଚର, ସ୍ଥଳଚର ଓ ଆକାଶଚର ପ୍ରାଣୀମାନେ ବାସ କରନ୍ତି ।

ମାତ୍ର ସେମାନଙ୍କ ସଂଖ୍ୟା ଅତି ଅଳ୍ପ । ମେରୁଗୃଧ୍ର ଚଟକର ମଧୁର ସ୍ୱର ସେମାନଙ୍କୁ ମୁଗ୍ଧ କରିଥିଲା । ଶ୍ୱେତଭଲ୍ଲୁକ ଓ ସିନ୍ଧୁଘୋଟକ ଏ ଅଞ୍ଚଳରେ ଦୃଷ୍ଟିଗୋଚର ହୁଅନ୍ତି । ଜଳରେ ମଧ୍ୟ କୀଟାଣୁ ଦେଖାଯାନ୍ତି । ମେରୁସାଗରର ମତ୍ସ୍ୟଗୁଡ଼ିକ ଅନେକ ସମୟରେ ଅନୁକୂଳ ସ୍ରୋତମୁଖରେ ମେରୁ ନିକଟକୁ ଯାଇ ପୁଣି ପ୍ରତ୍ୟାବର୍ତ୍ତନ କରନ୍ତି । ସ୍ଥଳେ ସ୍ଥଳେ ଜଳ ଉଷ୍ଣ । ଠିକ୍ ଉତ୍ତର ମେରୁ ନିକଟରେ ଜଳରାଶିର ଗଭୀରତା ପ୍ରାୟ ୧୫,୦୦୦ ଫୁଟ । ଶିଉଳ ଓ ସ୍ଥଳ-ବିଶେଷରେ ଈଷତ୍ ପୀତାଭ ତୃଣରାଶି ସାମାନ୍ୟ ପରିମାଣରେ ପରିଲକ୍ଷିତ ହୁଏ । ମେରୁର ଭଲ୍ଲୁକ ସାଧାରଣତଃ ମତ୍ସ୍ୟ ଏବଂ ବରଫସଂଲଗ୍ନ ଶିଉଳିଉପରୁ ପୋକ ଖାଇ ପ୍ରାଣଧାରଣ କରେ ।

ଉତ୍ତର ମେରୁ କେବଳ ଯେ ଅବିଷ୍କୃତ ହୋଇଛି ତାହା ନୁହେଁ, ସଭ୍ୟ ମାନବ ନିଜର ଅସାଧାରଣ ବିଦ୍ୟାବୁଦ୍ଧି ପ୍ରୟୋଗ କରି ଅଜ୍ଞ ପ୍ରକୃତିର ବିଜେତା ହେବାକୁ ଯାଉଛି । ସେଠାରେ ବର୍ତ୍ତମାନ ଏକ ବିମାନଘାଟୀ ପ୍ରତିଷ୍ଠିତ ହେଲଣି ଏବଂ ପ୍ରକୃତିର ପ୍ରତିକୂଳ ଅବସ୍ଥାଗୁଡ଼ିକୁ ଜୟ କରି ମାନବ ସ୍ୱଚ୍ଛନ୍ଦରେ ସେ ଅଞ୍ଚଳରେ ବସବାସ କରିବାକୁ ସଚେଷ୍ଟ ହେଉଛି ।

## ପ୍ରଶ୍ନ

୧ । ନାନ୍‌ସେନ୍‌ଙ୍କ ମେରୁଯାତ୍ରା ବର୍ଣ୍ଣନା କର ।

୨ । ରୁଷିଆର ମେରୁଯାତ୍ରୀମାନେ ଉତ୍ତର ମେରୁ ସମ୍ବନ୍ଧରେ କି କି ତଥ୍ୟ ସଂଗ୍ରହ କରିଥିଲେ ?

୩ । ଅର୍ଥ ଲେଖି ବାକ୍ୟରେ ବ୍ୟବହାର କର—
କୃତାନ୍ତର କରାଳ କବଳ, ଅମୋଘ ଅସ୍ତ୍ର, ବିଫଳମନୋରଥ, ଜଟିଳ ସମସ୍ୟା, ନିରବଚ୍ଛିନ୍ନ ଅଧ୍ୟବସାୟ ।

୪। ପାଠମଧ୍ୟରୁ ନିମ୍ନଲିଖିତ ଅର୍ଥ ବୁଝାଉଥିବା ପଦଗୁଡ଼ିକ ଲେଖ—

ଯାହା ବାରଣ କରିବା ଦୁଃସାଧ୍ୟ, କୂଳର ସମୀପ, ପୂର୍ବେ ଯାହା ବଣ ନ ଥିଲା ଏବେ ହେଲା, ସଂପୂର୍ଣ୍ଣରୂପେ ଲାଗିଥିବା, ଯେ ଅବିଷ୍କାର କରନ୍ତି, ସମୁଦ୍ର ସମ୍ବନ୍ଧୀୟ, ଭୟ ନାହିଁ ଯାହାର।

---

## ଆମର ଖାଦ୍ୟ ସମସ୍ୟା

ସାରବାନ୍ ସୁଖାଦ୍ୟ ତ ଦୂରର କଥା, ପେଟ ପୂରାଇ ଯଦି ପ୍ରତିଦିନ ମୁଠାଏ ଖାଇବାକୁ ନ ମିଳେ, ତେବେ ଅବସ୍ଥା ହେବ କଅଣ ? ଅଳ୍ପ ଖାଦ୍ୟ ଖାଇ ଏବଂ ଅଗତ୍ୟା ଅଖାଦ୍ୟ ଖାଇ ମଣିଷ ସୁସ୍ଥ ସବଳ ହେବ କିପରି ? ତାର ପରମାୟୁ ହେବ କେତେ ? କାମ କରିବାକୁ ଶକ୍ତି ଆସିବ କାହୁଁ? ଇଉରୋପ ଓ ଆମେରିକାରେ ଶ୍ରମିକ କାମ କରିପାରନ୍ତି ବେଶୀ, ତେଣୁ ମଜୁରି ପାଆନ୍ତି ଅଧିକ। ଆମ ଦେଶର ଶ୍ରମିକ କୃଷିବାସରେ କିମ୍ବା କଳକାରଖାନାରେ କୌଣସିଠାରେ କଠିନ ପରିଶ୍ରମ କରିପାରେ ନାହିଁ; ତେଣୁ ତାର ମଜୁରି ଅଳ୍ପ ହେବା ସ୍ୱାଭାବିକ। ଏ ଅଭିଯୋଗ ନିର୍ଘାଟ ସତ୍ୟ; ମାତ୍ର ଏଥିରୁ ନିସ୍ତାର ନାହିଁ। ହିସାବ କରି ଦେଖାଯାଇଛି; ଆମ ଦେଶରେ ଜଣେ ଶ୍ରମିକ ଯେତେ କୋଇଲା ଖୋଳିପାରେ, ଜର୍ମାନୀରେ ଜଣେ ଶ୍ରମିକ ତାର ତିନି ଗୁଣ, ବିଲାତରେ ତହିଁରୁ ଅଧିକ ଓ ଆମେରିକାରେ ସାତଗୁଣ ଖୋଳିପାରେ। ଭାରତବର୍ଷରେ ଲୁଗାକଳରେ ଜଣେ ଶ୍ରମିକ ଯେତିକି କାମ କରିପାରେ, ମାଞ୍ଚେଷ୍ଟରର ଶ୍ରମିକ କରେ ତାର ପ୍ରାୟ ତିନି ଗୁଣ।

ପ୍ରାୟ ସବୁପ୍ରକାର କଳକାରଖାନାରେ ଅବସ୍ଥା ଏହିପରି । ଶିଳ୍ପ କମିଶନ୍ ଆଗରେ ସାକ୍ଷ୍ୟ ଦେଲାବେଳେ ମାକ୍ ରବର୍ଟ ସାହେବ ଦେଖାଇଥିଲେ ଯେ, ଜଣେ ବିଲାତି ଶ୍ରମିକର କାମ କରିବା ଶକ୍ତି ଭାରତୀୟ ଶ୍ରମିକର ପ୍ରାୟ ଗୁରୁ ଗୁଣ । ସେ ଦେଶର ଶ୍ରମିକ ଯେ ବେଶୀ ରୋଜଗାର କରିବ, ଏଥିରେ ସନ୍ଦେହ କଣ ? ଆମ ଲୋକଙ୍କ ପକ୍ଷରେ ବାଲିବାଡ଼ରେ ଗୀଗଁହିରେ ନିବିଷ୍ଟ-ଭାବରେ ପାଞ୍ଚ ଛଅ ଘଣ୍ଟା ପରିଶ୍ରମ କରିବା କଷ୍ଟକର । କାମ କମ୍ ହେଲେ ରୋଜଗାର ହୁଏ କମ୍; ଅତ ଖାଇବାକୁ ଯଥେଷ୍ଟ ମିଳିବ କୁଆଡ଼ୁ ? ଏ କଥାଟି ଗୋଟାଏ ଗୋଲକଧନ୍ଧା । ଖାଇବାର ଅଭାବ ହେଲେ କାମ କରିବାର ଶକ୍ତି କମିଯିବାର କଥା । ପୁଣି କାମ କରିବାର ଶକ୍ତି ନ ଥିଲେ ଉପାର୍ଜ୍ଜନ ହେବ କମ, ଖାଇବାର ହେବ ଅଭାବ । ଏ ସମସ୍ୟା ଆମ ଦେଶରେ ଦିନକୁ ଦିନ ଗୁରୁତର ହୋଇ ଉଠୁଛି ।

କେହି କେହି ଯୁକ୍ତି କରିବାର ଶୁଣାଯାଏ, ଭାରତବର୍ଷରେ ମଜୁରି କମ୍ । ତେଣୁ କଳକାରଖାନାରେ ଯେକୌଣସି ଜିନିଷ ତିଆରି କଲେ ସ୍ୱତଃ ଖର୍ଚ୍ଚ ହୁଏ ଅଳ୍ପ । ଏ ଯୁକ୍ତି କିନ୍ତୁ ଭ୍ରମାତ୍ମକ । ଶ୍ରମିକ ମଜୁରି ପାଏ କମ୍ କାମ ମଧ୍ୟ କରେ କମ୍ । ସୁତରାଂ କୌଣସି ଜିନିଷ ପ୍ରସ୍ତୁତ କରିବା ଲାଗି ବହୁତ ଶ୍ରମିକ ଆବଶ୍ୟକ ହୁଅନ୍ତି । ଜିନିଷର ମୂଲ୍ୟ ତେଣୁ ହୋଇପଡ଼େ ଖୁବ୍ ବେଶୀ । ବିଦେଶୀ ଜିନିଷ ଆଗରେ ମୁଣ୍ଡ ଟେକି ଠିଆ ହେବା ଆଉ ସମ୍ଭବପର ହୋଇପାରେ ନାହିଁ ।

ଖାଲି କାର୍ଯ୍ୟକ୍ଷମ ହେବାଲାଗି ଯେ ଖାଦ୍ୟ ଆବଶ୍ୟକ ହେବ, ତା ନୁହେଁ । ଖାଦ୍ୟହିଁ ମନୁଷ୍ୟକୁ ସୁନ୍ଦର କରେ, ସ୍ୱରୂପ ଦିଏ । ବିଦେଶୀ ଲୋକଙ୍କ କଥା ଛାଡ଼ ଦିଅଯାଉ । ଆମର ଏଠି

ଭାରତବର୍ଷ ଭିତରେ ସୀମାନ୍ତ ପ୍ରଦେଶ, ପଞ୍ଜାବ ଆଉ ଉତ୍ତର-ପ୍ରଦେଶର ଲୋକଙ୍କ ପ୍ରତି ଦୃଷ୍ଟି ଦେଲେ ସହଜରେ ବୁଝିହୁଏ, ଓଡ଼ିଆ ବା ବଙ୍ଗାଳୀଙ୍କଠାରୁ ତାଙ୍କର ତାରତମ୍ୟ କେତେ । ସେଅଞ୍ଚଳର ଲୋକଙ୍କ ସାମନାରେ ଠିଆହେଲେ ସଙ୍କୋଚ ବୋଧ ହୁଏ । କୁହାଯାଇପାରେ, ଏଥିର କାରଣ ସେଠାର ଜଳବାୟୁ ଏବଂ ସେଠାର ବଂଶଗତ ପରମ୍ପରାର ଫଳ । ଏ ସବୁ ପ୍ରଭାବ ଯେ ଅଛି ଏଥିରେ ସନ୍ଦେହ ନାହିଁ । ମାତ୍ର ଖାଦ୍ୟର କରାମତି ଏଥିରେ ବହୁତ । ଆମର ଏଇ ଓଡ଼ିଶା ରାଜ୍ୟରେ ଧନୀ ଜମିଦାର ରାଜପରିବାରରେ ସୁନ୍ଦର ସୁଠାମ ଯୁବକ ଯୁବତୀ ଅଛନ୍ତି । ଏଇ ଦେଶର ଦରିଦ୍ର ପରିବାରର ଲୋକେ ଧନୀ ପରିବାରର ଲୋକଙ୍କଠାରୁ ଚେହେରାରେ ଅପେକ୍ଷାକୃତ ହୀନ । ମଣିଷର ରୂପ ଉପରେ ଖାଦ୍ୟର ପ୍ରଭାବ ବେଶୀ ।

ପୁଣି ଦେହକୁ କାର୍ଯ୍ୟକ୍ଷମ କରିବା ଲାଗି ଯେଉଁ ଖାଦ୍ୟ ଅବଶ୍ୟକ, ଖାଲି ସେଇଥିରେ ଲୋକ ସୁସ୍ଥ, ନୀରୋଗ ହୁଏ ନାହିଁ । ଦୈନନ୍ଦିନ ଖାଦ୍ୟ ମଧ୍ୟରେ ସେଥିପାଇଁ ମଧ୍ୟ ଉପାଦାନ ରହିବା ଆବଶ୍ୟକ । ସବୁ ପ୍ରକାର ଭିଟାମିନ୍ ଉପଯୁକ୍ତ ପରିମାଣରେ ଖାଦ୍ୟରେ ସ୍ଥାନ ନ ପାଇଲେ ଶରୀର ସୁସ୍ଥ ଓ ନୀରୋଗ ହୋଇ ପାରିବ ନାହିଁ । ସେଥିଲାଗି ମାଛ, ମାଂସ, ଦୁଧ, ଘିଅ, ଅଣ୍ଡା ଏବଂ ନାନା ଜାତିର ଫଳ ଅବଶ୍ୟକ । କେବଳ ଗୋଟାଏ ଜିନିଷ ଯଥେଷ୍ଟ ପରିମାଣରେ ପେଟ ପୂରାଇ ଖାଇପାରିଲେ ଉପଯୁକ୍ତ ସାର ଶରୀର ପାଏ ନାହିଁ । ବଙ୍ଗଳା, ଓଡ଼ିଶା ଓ ମାନ୍ଦ୍ରାଜ ପ୍ରଦେଶରେ ସାଧାରଣ ଲୋକେ ପ୍ରାୟ ସମ୍ପୂର୍ଣ୍ଣ ଭାବରେ ନିର୍ଭର କରନ୍ତି ଖାଲି ଭାତଗଣ୍ଡାକ ଉପରେ । ଏଥିରେ ପେଟ ପୂରିପାରେ, ମାତ୍ର ଶରୀର ଉପଯୁକ୍ତ ଆହାର ପାଏ ନାହିଁ । ଅଳ୍ପ ଡାଲି ସମସ୍ତେ

ବୁଝିଲେଣି, ବଭଳ ଜାତିର ଖାଦ୍ୟ ଭୋଜନର ଅଙ୍ଗୀଭୂତ ହେବା ଦରକାର । ସେଥିପାଇଁ ସବୁ ଦେଶରେ ଚେଷ୍ଟା ମଧ୍ୟ ହେଉଅଛି ।




[ ସୁଷମ ଖାଦ୍ୟର ଚିତ୍ର ]

ଖାଦ୍ୟର ଉନ୍ନତି କରିବା ପାଇଁ ଉନ୍ନତ ଦେଶମାନଙ୍କରେ ନାନା ଉଦ୍ୟମ କରାଯାଇଛି । ୧୯୦୨ ମସିହାରେ ବୋର୍ ଯୁଦ୍ଧ ସମୟରେ ଯେତେବେଳେ ବିଲାତରେ ସୈନ୍ୟ ସଂଗ୍ରହ କରାଗଲା, ସେତେବେଳେ ପାଞ୍ଚଫୁଟ ଛଅଇଞ୍ଚ ସ୍ଥାନରେ ସୈନିକ ହେବାଲାଗି ଉଚ୍ଚତା ପାଞ୍ଚଫୁଟ କରି ଦିଆଗଲା । ନ ହେଲେ ଉପଯୁକ୍ତସଂଖ୍ୟକ ସୈନ୍ୟ ମିଳିପାରିଲେ ନାହିଁ । ସାଧାରଣ ଖାଦ୍ୟ ସେତେବେଳେ ଥିଲା ରୋଟି, ଅଳୁ ଅଉ ଚିନି । ତାପରେ ସରକାର ଲାଗିପଡ଼ିଲେ ଏ ସମସ୍ୟାର ସମାଧାନ ପାଇଁ । ସାଧାରଣ ସ୍ୱାସ୍ଥ୍ୟ କ୍ରମେ

ନାନା ବ୍ୟବସ୍ଥା କରାଗଲା । ତହିଁ ସଙ୍ଗେ ସଙ୍ଗେ ଉପଯୁକ୍ତ ଖାଦ୍ୟର ବିଧାନ ମଧ୍ୟ ହେଲା । ସ୍କୁଲମାନଙ୍କରେ ଦୁଧ, କଡ୍‌ମାଛର ତେଲ ଇତ୍ୟାଦି ବିନା ମୂଲ୍ୟରେ ବା ଅଳ୍ପ ମୂଲ୍ୟରେ ଯୋଗାଇ ଦିଆଗଲା ।

ସେ ଦେଶରେ ଶିକ୍ଷା ବାଧ୍ୟତାମୂଳକ । ପ୍ରତ୍ୟେକ ବାଳକ ବାଳିକା ସ୍କୁଲରେ ପଢ଼ିବାକୁ ବାଧ୍ୟ । ତେଣୁ ବିଳାତର ସମସ୍ତ ଶିଶୁ ଏ ଖାଦ୍ୟ ଖାଇବାକୁ ପାଇଲେ । ୧୯୧୪ ମସିହାରେ ମହାଯୁଦ୍ଧ ବେଳକୁ ଦେଖାଗଲା, ଖାଦ୍ୟ ଅଭାବରୁ ଯେଉଁସବୁ ରୋଗ ହୁଏ, ସେ ସବୁ ଏକାବେଳକେ ଲୋପ ପାଇଛି । ଶିଶୁ-ମରଣ ଓ ଯକ୍ଷ୍ମା ପ୍ରଭୃତି ରୋଗ ଶତକଡ଼ା ପଚିଶ ଭାଗ କମିଯାଇଛି । ମାତ୍ର ପନ୍ଦର ବର୍ଷ ମଧ୍ୟରେ କି ଅଦ୍ଭୁତ ପରିବର୍ତ୍ତନ । ଖାଦ୍ୟ ଯୋଜନାରେ ବରାବର ବିଚମୋନ୍ନତି ଚାଲିଛି । ୧୯୧୪ ବେଳକୁ ଲୋକେ ଦୁଧ, ଛେନା, ଲହୁଣୀ, ଅଣ୍ଡା ଓ ଫଳ ଯେଉଁ ପରିମାଣରେ ଖାଇବାକୁ ପାଉଥିଲେ, ୧୯୩୪ ବେଳକୁ ତହିଁର ୬୦ଭାଗ ଅଧିକ ହେଲା । ଗତ ତିରିଶ ବର୍ଷ ମଧ୍ୟରେ ବିଳାତରେ ବହୁତ ଉନ୍ନତି କରାଯାଇଛି । ପୂର୍ବରୁ ପେ ତଳେ ସ୍କୁଲ ଛାତ୍ରଛାତ୍ରୀମାନଙ୍କ ଓଜନ ଯାହା ଥିଲା, ବର୍ତ୍ତମାନ ତାଠାରୁ ଅନେକ ବଢ଼ିଯାଇଛି । ହାରାହାରି ଉଚ୍ଚତା ମଧ୍ୟ ଦୁଇଇଞ୍ଚ ଅଧିକ ହୋଇଛି । ୧୯୩୯ରେ ଯୁଦ୍ଧ ଆରମ୍ଭ ହେଲା ବେଳକୁ ଇଂରେଜ ଲୋକଙ୍କ ପାଇଁ ଖାଦ୍ୟର ବ୍ୟବସ୍ଥା ଥିଲା ଅତି ଚମତ୍କାର । ଏହା ଏକ ବିରାଟ ଜାତୀୟ ଗୌରବ; ଏଥିରେ ଗର୍ବ ଅନୁଭବ କରିବା ଯଥାର୍ଥ ।

ଏ ସବୁ ଶୁଣିଲେ ଆମକୁ ଅଲ୍ଲାଉଦ୍ଦିନ ଗଳ୍ପ ଶୁଣିଲା ପରି ଲାଗେ । ଆମ ଦେଶର ଅବସ୍ଥା କାହିଁ କେତେ ତଳେ ?

ହିସାବପତ୍ର ତ ନାହିଁ, ତେବେ ଲୋକେ କହନ୍ତି, ଆଗେ ଏ ଦେଶରେ ସୁନ୍ଦର ସୁପୁରୁଷ 'ପଞ୍ଚହତା' ଲୋକ ଥିଲେ, କେତେ ଅସାଧ୍ୟ ସାଧନ କରିପାରୁଥିଲେ । ଖାଇବାକୁ ଉପଯୁକ୍ତ ଖାଦ୍ୟ ନ ମିଳିଲେ ମଣିଷର ପରମାୟୁ ହେବ କେତେ ? ପ୍ରତି ହଜାରକରେ ଆମ ଦେଶରେ ମୃତ୍ୟୁ ସଂଖ୍ୟା ବର୍ଷକୁ ତେଇଶ । ପୃଥିବୀର ଅନ୍ୟ ଦେଶରେ ମୃତ୍ୟୁର ହାର କ୍ୱଚିତ୍ ଏତେ ବେଶୀ । ଏ ଦେଶରେ ଯେତେ ଶିଶୁ ଜାତ ହୁଅନ୍ତି, ତହିଁରୁ ବର୍ଷେ ନପୂରୁଣୁ ହଜାରକରେ ମରନ୍ତି ୧୬୨ଜଣ, ଇଂଲଣ୍ଡରେ ଅଠାବନ, ଆଉ ଆମେରିକାରେ ଚଉବନ । ଏ ଦେବଭୂମି ଭାରତବର୍ଷରେ ଶିଶୁଟିଏ ହାରାହାରି ହିସାବରେ ୨୭ବର୍ଷ ମାତ୍ର ପରମାୟୁ ଘେନ ଭୂମିଷ୍ଠ ହୁଏ ଅବଶ୍ୟ ୨୭ ବର୍ଷରୁ ଅଧିକ ବଞ୍ଚିଲେ ତାକୁ ପ୍ରେତ ବୋଲି ଧରାଯାଏ ନାହିଁ; ମାତ୍ର ଯେଉଁ ବୟସରେ ଲୋକେ ଏ ଦେଶରେ ଜୀବନ ଲୀଳା ସାଙ୍ଗ କରନ୍ତି, ସେ ସବୁ ହିସାବ କଲେ ହାରାହାରି ୨୭ବର୍ଷ ମାତ୍ର ଏ ଦେଶରେ ମନୁଷ୍ୟର ପରମାୟୁ । ନିଉଜିଲାଣ୍ଡରେ ହାରାହାରି ଜୀବନକାଳ ପୃଥିବୀରେ ସବୁଠାରୁ ବେଶୀ— ୬୭ ବର୍ଷ । ଇଂଲଣ୍ଡ ଓ ଆମେରିକାରେ ୬୨, ଜାପାନରେ ୪୭ । ସେ ସମସ୍ତ ଦେଶରେ ହାରାହାରି ପରମାୟୁ କ୍ରମେ ବଢ଼ୁଛି । ଆମର କିନ୍ତୁ ଅବସ୍ଥାରେ କୌଣସି ପରିବର୍ତ୍ତନ ହୋଇନାହିଁ ।

ବୋଧହୁଏ ଏପରି କୌଣସି ରୋଗ ନାହିଁ, ଯାହାର ଅସ୍ଥାନ ଭାରତବର୍ଷରେ ନାହିଁ । ଆଜିକାଲି ଯାତାୟାତର ସୁବିଧା ସୁଯୋଗ ଯେଉଁ ପରିମାଣରେ ବଢ଼ିଛି, ସେଥିରେ ରୋଗର ଦେଶ ବିଦେଶ ବ୍ୟାପିବା ସହଜ ହୋଇଛି । ସକଳ ପ୍ରକାର ରୋଗକୁ ଅଭ୍ୟର୍ଥନା କରିବା ଲାଗି ଆମର କ୍ଷେତ୍ର ପ୍ରସ୍ତୁତ । ଇଟାଲିରେ ମେଲେରିଆର ଜନ୍ମ । ସେଠାରୁ ବିତାଡ଼ିତ ହୋଇ ସେ ରାଜତ୍ୱ କରୁଛି

ଭାରତବର୍ଷରେ । ଏସବୁ ଭିତରେ ଯେତେବେ ଉପଯୁକ୍ତ ଖାଦ୍ୟ ନ ମିଳେ, ତେବେ ରୋଗ ବିରୁଦ୍ଧରେ ସଂଗ୍ରାମ କରିବାଲାଗି ମନୁଷ୍ୟର ଦେହରେ ଶକ୍ତି ଆସିବ କାହୁଁ ?

କେହି କେହି ନୀତିବାଦୀ କହନ୍ତି, ଦୁଃଖ-ଦୁର୍ବିପାକ, ଅଭାବ-ଅସୁବିଧା ସଙ୍ଗେ ସଂଗ୍ରାମ କଲେ ମାନବର ନୈତିକ ବଳ ଉନ୍ନତ ହୁଏ । କାହିଁ ଲକ୍ଷକେ କୋଟିକେ କେଉଁଠାରେ ଗୋଟିଏ ଅବା ହେଉଁଥିବ । ମାତ୍ର ଅଭାବ ଓ ଦାରିଦ୍ର୍ୟ ମଣିଷକୁ ଏପରି ନିଷ୍ପେଷିତ କରିଦଏ ଯେ, ମୁଣ୍ଡ ଟେକି ଠିଆ ହେବାପାଇଁ ମଧ୍ୟ ତାର ସାହସ ହୁଏ ନାହିଁ—ଆଉ ନୈତିକ ବଳ ତ ଦୂରର କଥା । ଖାଦ୍ୟାଭାବରେ ମନୁଷ୍ୟ ପଶୁତ୍ୱ ଆଚରଣ କରେ । ଦୁର୍ଭିକ୍ଷ ଅନାଟନବେଳେ ମା ନିଜର ସନ୍ତାନକୁ ଭକ୍ଷଣ କରିବାର ଦେଖା ଯାଇଛି; ଏପରିକି ସନ୍ତାନକୁ ହତ୍ୟା କରିଛି କିମ୍ବା ତା ମୁଖରୁ ଖାଦ୍ୟ-ଟିକକ ବଳପୂର୍ବକ କାଢ଼ି ନେଇଛି । ଏଥିରେ ପୁଣି ନୈତିକତାର କଥା ଉତ୍ଥାପନ କରିବା ବିଡ଼ମ୍ବନା ନୁହେଁ କି ? ୧୯୪୩ ମସିହାରେ ଲକ୍ଷ ଲକ୍ଷ ଲୋକ ଅନ୍ନାଭାବରେ ପ୍ରପୀଡ଼ିତ ହେଲାବେଳେ ପ୍ରତିବାଦ ପର୍ଯ୍ୟନ୍ତ ତାଙ୍କ ମୁଖରୁ ବାହାରିଲା ନାହିଁ । ଅବସ୍ଥାପନ୍ନ ଲୋକେ ବରଂ ଅନୁକମ୍ପା ଦେଖାଇ ସେମାନଙ୍କ ପାଇଁ ଆନ୍ଦୋଳନ କଲେ । ଅଭାବ, ପୁଣି ଭାଡ଼ଗଣ୍ଡାକର ଅଭାବ ମଣିଷର ନୈତିକତା, ବଳ, ସାହସ, ହିତାହିତ ଜ୍ଞାନ ସମସ୍ତ ଧ୍ୱଂସ କରିଦଏ । ପୃଥିବୀର ବହୁ ଭାଗ ଯେତେବେଳେ ଅନ୍ଧକାରମୟ ଥିଲା, ଭାରତବର୍ଷ ସେତେବେଳେ ସୃଷ୍ଟି କରିଥିଲା ଏକ ତୁଙ୍ଗ ସଭ୍ୟତା । ଅନାୟାସରେ ସେତେବେଳର ଅଳ୍ପ ଲୋକଙ୍କ ପାଇଁ ଏ ଦେଶ ଦେଇ ପାରୁଥିଲା ଯଥେଷ୍ଟ ଖାଦ୍ୟ । ଦେଶର ଏହି ଅବସ୍ଥା ଲକ୍ଷ୍ୟ କରି ଆମ ସ୍ୱାଧୀନ ସରକାର ଜନସାଧାରଣଙ୍କର ଖାଦ୍ୟାଭାବ ଦୂର କରିବା ନିମନ୍ତେ

ଯଥାସାଧ୍ୟ ଚେଷ୍ଟା କରୁଅଛନ୍ତି । ଏଥିପାଇଁ ଅଧିକ ଖାଦ୍ୟ ଉତ୍ପାଦନ, ଉନ୍ନତତର କୃଷିପ୍ରଣାଳୀ ପ୍ରବର୍ତ୍ତନ ଇତ୍ୟାଦି ବହୁ ଯୋଜନାକୁ ବର୍ତ୍ତମାନ ସରକାର କାର୍ଯ୍ୟକାରୀ କରିବା ଲାଗି ଯତ୍ନପର । ଏଥିନିମିତ୍ତ ଅବଶ୍ୟକ ସର୍ବସାଧାରଣଙ୍କର ସହାନୁଭୂତି ଓ ସଦିଚ୍ଛା । ଏଗୁଡ଼ିକ କାର୍ଯ୍ୟକାରୀ ହୋଇପାରିଲେ ଭାରତବର୍ଷ ଯେ ପୃଥିବୀର ଅନ୍ୟସବୁ ଦେଶ ସହିତ ସମତା ରକ୍ଷା କରିପାରିବ, ଏଥିରେ ସନ୍ଦେହ ନାହିଁ ।

## ପ୍ରଶ୍ନ

୧ । ଭାରତୀୟମାନଙ୍କର ଶାରୀରିକ ଅବନତିର କାରଣମାନ ଉଲ୍ଲେଖ କର ।

୨ । ସ୍ୱାସ୍ଥ୍ୟର ଉନ୍ନତି ପାଇଁ ବିଲାତରେ କି ଉଦ୍ୟମ କରାଯାଇ-ଅଛି ? ବର୍ତ୍ତମାନ ଭାରତ ସରକାର ଏଥିପାଇଁ କି କି ଚେଷ୍ଟା କରୁଅଛନ୍ତି ?

୩ । "ଦୁଃଖ-ଦୁର୍ବିପାକ······ଉନ୍ନତି ହୁଏ ।" ଏହା କେତେ ଦୂର ସତ୍ୟ ?

୪ । ବ୍ୟାସବାକ୍ୟ ଓ ସମାସର ନାମ ଲେଖ—
ପଞ୍ଚହତା, ଯାତାୟାତ, କାର୍ଯ୍ୟକ୍ଷମ, ଅସାଧ୍ୟ, ନୀରୋଗ ।

୫ । ବାକ୍ୟରେ ବ୍ୟବହାର କର—
ମୁଣ୍ଡ ଟେକି ଠିଆ ହେବା, ବଷା ବାନ୍ଧି ରହିବା, ଗଳ୍ପ ଶୁଣିଲା ପରି ଲାଗିବା, ଗର୍ବ ଅନୁଭବ କରିବା, ଲାଗି ପଡ଼ିବା ।

## ଖଣ୍ଡଗିରି-ଶିଖରେ

ଏହି କି ସେ ଖଣ୍ଡଗିରି ଯା ଶୋଭା ସଙ୍କୁଳ,
ଏହି କି ସେ ଖଣ୍ଡଗିରି ଯାର ଫଳଫୁଲ,
ଏହି କି ସେ ଖଣ୍ଡଗିରି ଯାର ବିଜନତା,
ଏହି କି ସେ ଖଣ୍ଡଗିରି ଯାର ତରୁଲତା,
ବିମୋହିଲା ପୂର୍ବେ ବୌଦ୍ଧ ତାପସ-ମାନସ,
ଶୋଭଇ ଶଙ୍ଖରେ ଯାର ଏବେ ବୌଦ୍ଧ ଯଶ ?
ବୌଦ୍ଧମନ୍ତ୍ରାବଳୀ ଅଙ୍କା ଅମର ଅକ୍ଷରେ
ଅଶୋକ-ଆଦେଶେ ରାଜେ ଯା ଶିଳା-ବକ୍ଷରେ, *
କାହାନ୍ତି ସେ ଯୋଗିବୃନ୍ଦ, କାହାନ୍ତି ଅଶୋକ ?
କାହା ହୃଦ ଦେଖି ଏହା ନ କରିବ ଶୋକ ?
'ଅହିଂସା ପରମ ଧର୍ମ' ଏ ମହାମନ୍ତ୍ରର
ଗମ୍ଭୀର ଶବଦେ ଆଉ ନ ତୋଷେ ଅନ୍ତର ।
ଶୂନ୍ୟ ଗୁମ୍ଫା ଅଭ୍ୟନ୍ତରେ ପଶିଣ ପବନ
ମନ୍ତ୍ରନାଦ ସ୍ଥାନେ କରେ ସନ ସନ ସ୍ୱନ ।
ଅହୋ ବୃଦ୍ଧ ଖଣ୍ଡଗିରି ପୁରାଣ ପ୍ରବୀଣ,
ଦେଖିଅଛ ଉତ୍କଳର କେତେ ଶୁଭ ଦିନ ।
ଉତ୍ସାହ, ଉଦ୍ୟମ, ଶକ୍ତି, ପ୍ରତିଭା, ବିଭବ,
ସାହସ, ବିକ୍ରମ, ଧୈର୍ଯ୍ୟ, ଜାତୀୟ ଗରବ,
ଉତ୍କଳର କେତେ କେତେ ଗୌରବକାହାଣୀ,
ଅତୀତ ଘଟନା ଦେଖି ସବୁ ଅଛ ଜାଣି ।

---

* ଅଶୋକଙ୍କ ଶିଳାଲିପି ପ୍ରକୃତରେ ଖଣ୍ଡଗିରିରେ ନାହିଁ; ଧଉଳଗିରିରେ ଅଛି । ଖଣ୍ଡଗିରିନିକଟବର୍ତ୍ତୀ ଉଦୟଗିରିର ହାତୀ-ଗୁମ୍ଫାରେ ଉତ୍କଳର ଜୈନସମ୍ରାଟ୍ ଖାରବେଳଙ୍କର ଶିଳାଲିପି ଥିବାରୁ କବି ତାହାକୁ ଭ୍ରମରେ ଅଶୋକଙ୍କ ଶିଳାଲିପି ବୋଲି ମନେ କରିଥିବା ସମ୍ଭବପର ।

ଏହି ଯେ ସମ୍ମୁଖେ ଶୋଭେ ବିରାଟ ମନ୍ଦର,
ଅନ୍ତରୀକ୍ଷ ମାପିବାକୁ ଟେକିଅଛି ଶିର;
କାଳବଳେ ହୋଇଅଛି ବିବର୍ଣ୍ଣ ଶରୀର,
ତଥାପି ସୁନ୍ଦର ତନୁ ଗମ୍ଭୀର ରୁଚିର ।
ତତ୍ପାଶେ ଦଶେ କେତେ ଦେବାଳୟଚୟ,
କାଳଗର୍ଭେ କେତେ ପୁଣି ହୋଇଲେଣି ଲୟ ।
କି ଅସୀମ ଶକ୍ତି, କେତେ ବିପୁଳ ବିଭବେ,
କେତେ ଧର୍ମ ଅନୁରାଗେ ଗଢ଼ା ଏ ସରବେ ।
ବେନି ମହାଧର୍ମ ଏଥି ସାମ୍ୟ ମୈତ୍ରୀ ଭାବେ
ସମ୍ମିଳିତ ପରସ୍ପର ଅଦ୍ଭୁତ ପ୍ରଭାବେ ।
ଧର୍ମେ ଧର୍ମେ କାହିଁ ଦ୍ୱେଷ ବାଦ ଅହଂକାର ?
ଅତୀତ ଉତ୍କଳ ଅହା କି ମହା ଉଦାର !
ଧନ୍ୟ ଲଲାଟେନ୍ଦୁ ! ଧନ୍ୟ କେଶରୀ-ପୁଙ୍ଗବ !
ଉତ୍କଳର ପୁଣ୍ୟଶ୍ଳୋକ ଅମରଗୌରବ !
ଶୌର୍ଯ୍ୟ-ବୀର୍ଯ୍ୟ, କଳା-କାବ୍ୟ, ଧନ-ଜ୍ଞାନ-ମାନ
ଥିଲା ଯାଙ୍କ ସୁଶାସନେ ପବିତ୍ର ବିଧାନ;
କହି ତାଙ୍କ କଥା, ତାଙ୍କ ରାଜ୍ୟ-ସମାଚାର
ନିର୍ଜୀବ ଉତ୍କଳେ ପ୍ରାଣ କର ହେ ସଞ୍ଚାର ।

## ପ୍ରଶ୍ନ

୧ । ଖଣ୍ଡଗିରିରେ କଅଣ ସବୁ ଦେଖିବାକୁ ମିଳେ ?

୨ । ଖଣ୍ଡଗିରିକୁ ଦେଖିଲେ ଉତ୍କଳର କି କି ପ୍ରାଚୀନ ଗୌରବ ମନରେ ଜାଗ୍ରତ ହୁଏ ?

୩ । ସରଳ ଭାଷାରେ ବୁଝାଇଦିଅ—

(କ) ବେନି ମହାଧର୍ମ......ଅଦ୍ଭୁତ ପ୍ରଭାବେ ।

(ଖ) ଏହି ଯେ ସମ୍ମୁଖେ.....ଟେକିଅଛି ଶିର ।

୬ । ଏକ ଏକ ପଦରେ ପ୍ରକାଶ କର—
ବୁଦ୍ଧଙ୍କର ଭକ୍ତ, ସ୍ଥବିରର ଭାବ, ସୀମା ନାହିଁ ଯାହାର,
ଦେବଙ୍କ ନିମିତ୍ତ ଅଳସ୍ଥ ।

---

## ଅଜନ୍ତାର ଚିତ୍ରକଳା

ଜଣେକ ଇଉରୋପୀୟ ସୈନିକ ହାଇଦରାବାଦ ଓ ବୋମ୍ବାଇ ପ୍ରଦେଶର ସୀମାନ୍ତଅଞ୍ଚଳ ପର୍ଯ୍ୟଟନ କଲାବେଳେ ତାପ୍ତୀ ନଦୀର ଏକ ଉପନଦୀ ନିକଟରେ ଉପସ୍ଥିତ ହେଲେ । ସେ ମୃଗୟା ଉଦ୍ଦେଶ୍ୟରେ ଗୋଟିଏ ହରିଣୀ ଓ ତାହାର ଶାବକକୁ ଅନୁସରଣ କରି ଯାଇ ଯାଇ ଅର୍ଦ୍ଧବୃତ୍ତାକାର ପ୍ରାଚୀରବତ୍ ଦଣ୍ଡାୟମାନ ଗୋଟିଏ ପର୍ବତଗାତ୍ରରେ ଖୋଦିତ କେତେକ ଗୁହା ଦେଖି ବିସ୍ମୟାଭିଭୂତ ହୋଇଥିଲେ । ଏପରି ନିକାଞ୍ଚନ ଜନଶୂନ୍ୟ ସ୍ଥାନରେ କିଏ କେବେ ଏହି ଗୁହାଗୁଡ଼ିକ କେଉଁ ଉଦ୍ଦେଶ୍ୟରେ ଖୋଦନ କରିଥିଲେ, ଏହି ଚିନ୍ତା ତାଙ୍କର ମନକୁ ଅଧିକାର କଲା । ଗୁହାଗୁଡ଼ିକର ନିକଟକୁ ଯିବା ନିମନ୍ତେ ଚେଷ୍ଟା କରି ସେ ବିଫଳମନୋରଥ ହେଲେ; କାରଣ ସେଗୁଡ଼ିକର ଚତୁର୍ଦ୍ଦିଗ ନିବିଡ଼ କଣ୍ଟକମୟ ଲତାଗୁଳ୍ମରେ ଅଚ୍ଛନ୍ନ ଥିଲା । ତେଣୁ ଅଗତ୍ୟା ସେ ସେନାନିବାସକୁ ପ୍ରତ୍ୟାବର୍ତ୍ତନ କରି ସହଚରଗଣଙ୍କୁ ଉକ୍ତ ଗୁହାମାନଙ୍କ କଥା କହିଲେ । ଏହା ଊନବିଂଶ ଶତାବ୍ଦୀର ପ୍ରଥମ ପାଦର କଥା ।

ଏ ସମ୍ବାଦ ପ୍ରଚାରିତ ହେବାମାତ୍ରେ ତାହା ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କର ଦୃଷ୍ଟି ଆକର୍ଷଣ କଲା । ବହୁ ଗବେଷଣା ପରେ ଏହି ଗୁହାଗୁଡ଼ିକ ଓ ଏଥିରେ ଥିବା ଚିତ୍ରସମୂହ ସମ୍ବନ୍ଧରେ ନାନା ମୂଲ୍ୟବାନ୍ ତଥ୍ୟ ନିର୍ଣ୍ଣୟ କରାଯାଇଅଛି । ଫଳତଃ ଏଗୁଡ଼ିକ

ଭାରତୀୟ ପ୍ରାଚୀନ କୀର୍ତ୍ତିମାନଙ୍କ ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରିଅଛି ।

ଯେଉଁ ସ୍ଥାନରେ ଉକ୍ତ *ସୈନିକ ଗୁହାଗୁଡ଼ିକ ଦେଖି ପାଇଥିଲେ, ତାହା ଅଜନ୍ତା ନାମରେ ପ୍ରସିଦ୍ଧ । ଏହା ହାଇଦରାବାଦର ଔରଙ୍ଗାବାଦଠାରୁ ଚଉଦ ମାଇଲ ଦୂରରେ



[ ଅଜନ୍ତାର ଭିତ୍ତିଚିତ୍ର ]

ଅବସ୍ଥିତ । ପ୍ରାଚୀନ ଯୁଗରେ ଭାରତର ବୌଦ୍ଧ ଓ ଜୈନ ସନ୍ନ୍ୟାସୀମାନେ ସାଂସାରିକ ଜୀବନକୁ ଦୁଃଖମୟ ମନେ କରି ସେଥିରୁ ପରିତ୍ରାଣ ପାଇବା ନିମନ୍ତେ ନିର୍ଜନ ସ୍ଥାନରେ ରହି ଭଗବଚ୍ଚିନ୍ତାରେ ସମସ୍ତ ଅତିବାହିତ କରୁଥିଲେ । ତେଣୁ ଧର୍ମ-ପରାୟଣ ରାଜନ୍ୟବୃନ୍ଦ ସେହି ସନ୍ନ୍ୟାସୀମାନଙ୍କ ବାସ ନିମନ୍ତେ ପର୍ବତଗାତ୍ରରେ ଗୁହାସବୁ ଖୋଦିତ କରାଇଥିଲେ । ଭୁବନେଶ୍ୱର-

ନିକଟବର୍ତ୍ତୀ ଖଣ୍ଡଗିରି ଓ ଉଦୟଗିରିରେ ଯେଉଁସବୁ ପୁରାତନ ଗୁମ୍ଫା ଦେଖିବାକୁ ମିଳେ, ସେସବୁ ଏହିପରି ବୌଦ୍ଧ ଓ ଜୈନ ସନ୍ନ୍ୟାସୀମାନଙ୍କର ଅବସ୍ଥାନ ନିମନ୍ତେ ଖୋଦିତ ହୋଇଥିଲା । ଠିକ୍ ସେହିଭଳି ଅଜନ୍ତାର ଗିରିକନ୍ଦରଗୁଡ଼ିକ ଧର୍ମଶୀଳ ରାଜା-ମାନଙ୍କଦ୍ୱାରା ବିଭିନ୍ନ ସମୟରେ ଖୋଦିତ ହୋଇଥିବା ବୋଲି ଅନୁମାନ କରାଯାଏ ।

ଆଧୁନିକ ଯୁଗରେ ଏହି ଗିରିଗୁହାଗୁଡ଼ିକର ବ୍ୟାବହାରିକ ମୂଲ୍ୟ ପ୍ରାୟ କିଛି ନ ଥିଲେହେଁ ଏଗୁଡ଼ିକ ଭାରତୀୟ ପ୍ରାଚୀନ ସଭ୍ୟତାର ନିଦର୍ଶନରୂପେ ପରିଗଣିତ । ଏହି ଗୁହାମାନଙ୍କର ଭିତ୍ତିଚିତ୍ରସମୂହ ଭାରତର ଅନ୍ଧକାରମୟ ପ୍ରାଚୀନ ଇତିହାସ-ଉପରେ ଆଲୋକପାତ କରିଅଛି ଏବଂ ଭାରତୀୟ ସଭ୍ୟତାର ପ୍ରାଚୀନତ୍ୱ ସମ୍ବନ୍ଧରେ ପୃଥିବୀର ଐତିହାସିକମାନଙ୍କୁ ନୂତନ ଉପାଦାନ ଯୋଗାଇ ଦେଇଅଛି । ପୁନଶ୍ଚ ଚିତ୍ରକରର ତୂଳୀରେ ଅଙ୍କିତ ଏପରି ମନୋରମ ଚିତ୍ର ପୃଥିବୀର ଅନ୍ୟତ୍ର ବିରଳ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପର୍ବତଗାତ୍ରରେ ଗୁହାନିର୍ମାଣ-କୌଶଳର ଚରମ ଉତ୍କର୍ଷ ଏହି ସ୍ଥାନରେ ଦେଖିବାକୁ ମିଳେ ।

ଅଜନ୍ତାର ଗୁହାଗୁଡ଼ିକ ଯେଉଁ ପର୍ବତଗାତ୍ରରେ ଖୋଦିତ, ତାହାର ପାଦ ଧୌତ କରି ଗୋଟିଏ କ୍ଷୁଦ୍ର ନଦୀ ପ୍ରବାହିତ ହେଉଅଛି । ଅଦୂରରେ ଗୋଟିଏ ଜଳପ୍ରପାତ ଗିରି-ଶିଖରରୁ ଲମ୍ଫ ପ୍ରଦାନ କରି ଅଧୋଭାଗରେ ଅବସ୍ଥିତ ସାତଟି ଜଳାଶୟ ଅତିକ୍ରମପୂର୍ବକ ବହି ଯାଉଅଛି । ଏହି ଜଳାଶୟଗୁଡ଼ିକ ସପ୍ତକୁଣ୍ଡ ନାମରେ ଅଭିହିତ ।

ଅଜନ୍ତାରେ ଅଣତିରିଶଟି ଗୁମ୍ଫା ଅବସ୍ଥିତ । ପ୍ରତ୍ୟେକଟି ଗୋଟିଏ ଗୋଟିଏ ଅଟ୍ଟାଳିକାର ଅନୁରୂପ । ଏମାନଙ୍କ ମଧ୍ୟରୁ

ଗୋଟିଏ ପ୍ରାୟ ଏକ ଶତ ହସ୍ତ ପର୍ଯ୍ୟନ୍ତ ପର୍ବତ-ଅଭ୍ୟନ୍ତରକୁ ଖୋଦିତ ହୋଇଅଛି । ଅନ୍ୟ ଗୋଟିଏ ଗୁମ୍ଫା ଦ୍ୱିତଳବିଶିଷ୍ଟ । ଅଧିକାଂଶ ଗୁହାର ଭିତ୍ତିଦେହରେ, ସ୍ତମ୍ଭମାନଙ୍କରେ, ଦ୍ୱାରଦେଶରେ ଓ ଛାତରେ ନର-ନାରୀ ବା ଜୀବଜନ୍ତୁର ମୂର୍ତ୍ତି, ଲତା-ପତ୍ର କୁମ୍ଭ ଫୁଲ-ଫଳ ପ୍ରଭୃତି ଖୋଦିତ ବା ଚିତ୍ରିତ ହୋଇଅଛି । କେତେକ ଗୁହାରେ ଖୋଦିତ ଲିପି ମଧ୍ୟ ଦେଖିବାକୁ ମିଳେ । ଐତିହାସିକ-ମାନଙ୍କ ମତରେ ଏହି ଗୁହାଗୁଡ଼ିକ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ସପ୍ତମ ବା ଅଷ୍ଟମ ଶତାବ୍ଦୀମଧ୍ୟରେ ନିର୍ମିତ ହୋଇଥିଲା । ବିସ୍ମୟର ବିଷୟ ଏହି ଯେ, ଶତ ଶତ ବର୍ଷ ଅତିକ୍ରାନ୍ତ ହୋଇଥିଲେହେଁ ଏହି ଚିତ୍ରଗୁଡ଼ିକ ପ୍ରକୃତିର ଧ୍ୱଂସକାରୀ ପ୍ରଭାବକୁ ଅନେକ ପରିମାଣରେ ପ୍ରତିହତ କରି ଆଜିପର୍ଯ୍ୟନ୍ତ ପ୍ରାୟ ଅକ୍ଷୁଣ୍ଣ ଅବସ୍ଥାରେ ତିଷ୍ଠି ପାରିଅଛି । ଅନୁମାନ କରାଯାଏ ଯେ, ସପ୍ତମ ଶତାବ୍ଦୀରେ ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ ଫଳରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍‌ଥାନ ହୁଅନ୍ତେ ବୌଦ୍ଧଧର୍ମର ପ୍ରଭାବ କ୍ଷୀଣ ହୋଇ ଆସିଲା ଏବଂ ଗୁହାଗୁଡ଼ିକ ସନ୍ନ୍ୟାସୀମାନଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ବନ୍ୟ ଜୀବଜନ୍ତୁଙ୍କ ବାସସ୍ଥଳୀରେ ପରିଣତ ହେଲା ।

ଏଠାରେ ପ୍ରସ୍ତରବକ୍ଷରେ ଭଗବାନ୍ ବୁଦ୍ଧଙ୍କ ଜୀବନର ବିଚିତ୍ର ଘଟଣାବଳୀ ଏପରି ନିପୁଣଭାବରେ ଚିତ୍ରଣ କରାଯାଇ-ଅଛି ଯେ, ସେଗୁଡ଼ିକୁ ଦେଖିଲେ ମାନବହୃଦୟ ସ୍ୱତଃ ତାହାଙ୍କ ପ୍ରବର୍ତ୍ତିତ ଧର୍ମପ୍ରତି ଆକୃଷ୍ଟ ହୁଏ । ବୁଦ୍ଧଦେବଙ୍କର ଜନ୍ମ, ଶୈଶବ, ବିଦ୍ୟାଶିକ୍ଷା, ଗୃହତ୍ୟାଗ, ଧର୍ମପ୍ରଚାର, ନିର୍ବାଣପ୍ରାପ୍ତି ପ୍ରଭୃତି ବିବିଧ ଘଟଣା ଓ କାର୍ଯ୍ୟାବଳୀ ଚିତ୍ରଗୁଡ଼ିକରେ ପ୍ରଦର୍ଶିତ ହୋଇ-ଅଛି । ଏତଦ୍‌ବ୍ୟତୀତ ତତ୍କାଳୀନ ନରନାରୀମାନଙ୍କର ଖାଦ୍ୟ, ବସ୍ତ୍ର, ଅଙ୍ଗଭୂଷଣ, ଆମୋଦପ୍ରମୋଦ, କଳହ, ରନ୍ଧନ, କ୍ରୟବିକ୍ରୟ,

ମୃଗୟା, ଗାନ-ବାଦ୍ୟ-ନୃତ୍ୟ ପ୍ରଭୃତିର ଚିତ୍ର ସ୍ଥାନେ ସ୍ଥାନେ ଜୀବନ୍ତଭାବରେ ଅଙ୍କିତ ହୋଇଅଛି । ଏହି ଚିତ୍ରଗୁଡ଼ିକରେ ବିଭିନ୍ନ ରଙ୍ଗର ସମାବେଶ ଅତୁଳନୀୟ । ଅବଶ୍ୟ କାଳର କୁଟିଳ ଗତିରେ ଚିତ୍ରଗୁଡ଼ିକ କେତେକ ସ୍ଥଳରେ ବିକୃତ ଓ ବିବର୍ଣ୍ଣ ହୋଇ ଯାଇଅଛି ଏବଂ ବର୍ତ୍ତମାନ ସେଗୁଡ଼ିକର ପୁନରୁଦ୍ଧାର କିୟତ୍ ପରିମାଣରେ ସାଧିତ ହୋଇଥିଲେହେଁ ପ୍ରଥମେ ସେଗୁଡ଼ିକ ଯେପରି ମନୋରମ ଥିଲା, ଠିକ୍ ସେପରି ହୋଇପାରି ନାହିଁ ।

ଅଜନ୍ତା ପରି ଓଡ଼ିଶାର କେନ୍ଦୁଝର ଜିଲ୍ଲା ଅନ୍ତର୍ଗତ ସୀତା-ବିଞ୍ଜିରେ ମଧ କେତେକ ଭିତ୍ତିଚିତ୍ର ଦେଖିବାକୁ ମିଳେ । ଏହି ଚିତ୍ରମାନ ବୋଧ ହୁଏ ଅଜନ୍ତାଚିତ୍ରର ସମସାମୟିକ । ଏଠାରେ ପର୍ବତଗାତ୍ରରେ କୌଣସି ରାଜାଙ୍କର ସମର ଅଭିଯାନ ଚିତ୍ରିତ ହୋଇଥିବା ପରି ଅନୁମିତ ହୁଏ । ଦୁଃଖର ବିଷୟ ଏହି ଯେ, ସୀତାବିଞ୍ଜିର ଭିତ୍ତିଚିତ୍ର ଅଜନ୍ତା ଭଳି ଐତିହାସିକମାନଙ୍କର ଦୃଷ୍ଟି ବର୍ତ୍ତମାନ ସୁଦ୍ଧା ଆକର୍ଷଣ କରିପାରି ନାହିଁ ।

ଅଜନ୍ତାର ଚିତ୍ରମାନଙ୍କରେ ଅସ୍ମମାନଙ୍କର ବହୁ ଶିକ୍ଷଣୀୟ ବିଷୟ ଅଛି । ସହସ୍ରାଧିକ ବର୍ଷ ପୂର୍ବେ ଭାରତର ଲୋକମାନେ କିପରି ବସ୍ତ୍ର ଓ ବେଶଭୂଷା ବ୍ୟବହାର କରୁଥିଲେ, ସେମାନଙ୍କର ଶିଳ୍ପକଳା କିପରି ଉନ୍ନତ ଥିଲା, ସେମାନଙ୍କର ଧର୍ମବିଶ୍ୱାସ ଓ ଆଚାରବ୍ୟବହାର କିପରି ରୁଚିପୂର୍ଣ୍ଣ ଥିଲା, ଏସବୁ ବିଷୟର ଧାରଣା କରିବାକୁ ହେଲେ ଅଜନ୍ତାର ଚିତ୍ରଗୁଡ଼ିକୁ ପୁଙ୍ଖାନୁପୁଙ୍ଖରୂପେ ପର୍ଯ୍ୟବେକ୍ଷଣ କରିବାକୁ ହେବ । ସେ ଯୁଗରେ ଭାରତୀୟ ନାରୀମାନେ କିପରି ସୁଶିକ୍ଷିତା ଓ ବିବିଧକଳାନିପୁଣା ଥିଲେ, ତାହାର ନିଦର୍ଶନ ମଧ ଏହି ଚିତ୍ରମାନଙ୍କରୁ ମିଳେ । ପ୍ରାଚୀନ ଭାରତର ଲିଖିତ ଇତିହାସ ନ ଥିଲେହେଁ ସେକାଳର ଶିଳ୍ପିବୃନ୍ଦ

ପଦଂଉଗାଦରେ ଏହି ଚିତ୍ରଗୁଡ଼ିକ ଅଙ୍କନ କରି ପରବର୍ତ୍ତୀ ଯୁଗର ଐତିହାସିକମାନଙ୍କପାଇଁ ସେମାନଙ୍କର ସାମାଜିକ ଓ ଧର୍ମ ଜୀବନର ସୁନ୍ଦର ଆଲେଖ୍ୟ ରଖି ଯାଇଅଛନ୍ତି ।

## ପ୍ରଶ୍ନ

୧ । ଅଜନ୍ତାର ଚିତ୍ରମାନଙ୍କରୁ ଆମ୍ଭେମାନେ କଅଣ ଜାଣିପାରୁଁ ?

୨ । ଓଡ଼ିଶାର କେଉଁ ସ୍ଥାନ ଅଜନ୍ତା ସହିତ ତୁଳନୀୟ ଓ କାହିଁକି ?

୩ । ଅଜନ୍ତାର ଗୁହାଗୁଡ଼ିକ କିପରି ଆବିଷ୍କୃତ ହେଲା ?

୪ । ବିଶେଷ୍ୟକୁ ବିଶେଷଣରେ ଓ ବିଶେଷଣକୁ ବିଶେଷ୍ୟରେ ପରିଣତ କର—

ସମାଜ, ସମାବେଶ, ପ୍ରବର୍ତ୍ତିତ, ପର୍ଯ୍ୟବେକ୍ଷଣ, ବିକୃତ, ଅନୁମିତ ।

୫ । ସନ୍ଧିବିଚ୍ଛେଦ କର—

ଅଧୋଭାଗ, ପୁନରୁତ୍‌ଥାନ, ଭଗବଚ୍ଚିନ୍ତା, ଆବିର୍ଭାବ, ନିରୀକ୍ଷଣ, ସନ୍ନ୍ୟାସ ।

---

## ଜଳରୁ ବୈଦ୍ୟୁତିକ ଶକ୍ତି

ଆଧୁନିକ ଯୁଗରେ ମାନବଜୀବନର ପ୍ରତ୍ୟେକ କ୍ଷେତ୍ରରେ ବିଜ୍ଞାନର ପ୍ରଭାବ ଏତେ ଅଧିକ ଯେ, ଏ ଯୁଗକୁ ବିଜ୍ଞାନ-ଯୁଗ ଆଖ୍ୟା ଦେଲେ ଅତ୍ୟୁକ୍ତି ହେବ ନାହିଁ । ଆଜି ଆମ୍ଭମାନଙ୍କର ଦୈନନ୍ଦିନ ଜୀବନରେ ଯେଉଁସବୁ ପଦାର୍ଥ ବ୍ୟବହୃତ ହେଉଅଛି, ଦିନେ ସେସବୁ ଲୋକମାନଙ୍କର କଳ୍ପନାର ମଧ୍ୟ ଅତୀତ ଥିଲା । ବିଜ୍ଞାନର ଉନ୍ନତି ସଙ୍ଗେ ସଙ୍ଗେ ସଭ୍ୟତା ଅଧିକ ଅଗ୍ରଗତି ଲାଭ କରିଅଛି । ଯେଉଁ ଦିନ ବୈଜ୍ଞାନିକ ବିଦ୍ୟୁତ୍‌-ଶକ୍ତିର ସନ୍ଧାନ ପାଇଲା, ସେଦିନ

ସେ ନିଜକୁ ଅସୀମ ଶକ୍ତିଶାଳୀ ମନେ କରି ନିଜ ବ୍ୟାବହାରିକ ଜୀବନରେ ଅଦ୍ଭୁତ ପରିବର୍ତ୍ତନର କଳ୍ପନା କଲା ; ଏହି କଳ୍ପନା କ୍ରମଶଃ କାର୍ଯ୍ୟରେ ପରିଣତ ହେଉଅଛି । ବିଦ୍ୟୁତ୍ ଆଜି ମାନବ-ସମାଜର ଦାସରୂପେ ଶତ ଶତ କାର୍ଯ୍ୟ ସମାଧାନ କରୁଅଛି । ଏହାଦ୍ୱାରା କେବଳ ଯେ ଶ୍ରମଲାଘବ ଘଟିଅଛି ତାହା ନୁହେଁ, ଶାରୀରିକ ଶକ୍ତିର ବହିର୍ଭୂତ ବହୁ କାର୍ଯ୍ୟ ଅନାୟାସରେ ସମାହିତ ହୋଇ ପାରୁଅଛି ।

ଆଧୁନିକ ସଭ୍ୟତାର ପ୍ରତ୍ୟେକ ବିଭାଗରେ ବିଦ୍ୟୁତର ପ୍ରଭାବ ସୁସ୍ପଷ୍ଟଭାବରେ ବିଦ୍ୟମାନ । ଯେଉଁ ଆଲୋକମାଳା ସହର ଓ ନଗରର ନୈଶ ଅନ୍ଧକାରକୁ ଅପସାରିତ କରୁଅଛି, ଯେଉଁ ବ୍ୟଜନସମୂହ ନିଦାଘସନ୍ତପ୍ତ ଘର୍ମାକ୍ତକଳେବର ନରନାରୀଙ୍କର ଶ୍ରାନ୍ତି ବିଦୂରିତ କରୁଅଛି, ଯେଉଁ ଯନ୍ତ୍ର ଅଳ୍ପ ସମୟମଧ୍ୟରେ ଲକ୍ଷ ଲକ୍ଷ ସଂଖ୍ୟକ ସମ୍ବାଦପତ୍ର ବା ପୁସ୍ତକ ମୁଦ୍ରଣ କରି ଦେଉଅଛି, ଯେଉଁ କାରଖାନା ଅଳ୍ପ କେତେକ ଘଣ୍ଟାମଧ୍ୟରେ ସହସ୍ର ସହସ୍ର ଗଜ ପରିମିତ ବସ୍ତ୍ର ଉତ୍ପାଦନ କରୁଅଛି, ଯେଉଁ ଟେଲିଫୋନ୍‌ଦ୍ୱାରା ଆମ୍ଭେମାନେ ଶତ ଶତ ମାଇଲ ଦୂରବର୍ତ୍ତୀ ବନ୍ଧୁଙ୍କ ସହିତ କଥୋପକଥନ କରିପାରୁଅଛୁଁ, ଯେଉଁ ବେତାର-ଯନ୍ତ୍ରଦ୍ୱାରା ପୃଥିବୀର ଅପର ପ୍ରାନ୍ତର ବାର୍ତ୍ତା ବା ସଙ୍ଗୀତନୃତ୍ୟାଦି ଏ ପ୍ରାନ୍ତରେ ବସି ଆମେ ଶୁଣି ପାରୁଅଛୁଁ ଓ ଦେଖି ପାରୁଅଛୁଁ, ସେସବୁ ବୈଦ୍ୟୁତିକ ଶକ୍ତିଦ୍ୱାରାହିଁ ପରିଚାଳିତ । ଏହି ଶକ୍ତିଦ୍ୱାରା ଆମ୍ଭମାନଙ୍କର ଯେତେ ଯେତେ ପ୍ରକାର କାର୍ଯ୍ୟ ସାଧିତ ହୋଇ ପାରୁଅଛି, ସେସବୁ ଗଣନା କରିବା କଠିନ ବ୍ୟାପାର । ଏପରିକି ରନ୍ଧନ, ବସ୍ତ୍ରଧାପନ, କେଶସଜ୍ଜା ପ୍ରଭୃତି ଗୃହକର୍ମରେ ମଧ୍ୟ ଏହି ଶକ୍ତି ବ୍ୟବହୃତ ହେଉଅଛି ।

ଯେଉଁ ବୈଦ୍ୟୁତିକ ଶକ୍ତି ମାନବକୁ ଏପରି ଅଭୂତପୂର୍ବ-ଭାବରେ ଶକ୍ତିମନ୍ତ କରିପାରିଅଛି, ତାହାର ଉତ୍ପତ୍ତି କିପରି ହୁଏ, ଏହି ପ୍ରଶ୍ନ ସ୍ୱଭାବତଃ ଅସ୍ମମାନଙ୍କ ମନରେ ଜାଗ୍ରତ୍ ହୋଇଥାଏ । ତାପ, ଆଲୋକ, ଶବ୍ଦ ଓ ଚୁମ୍ବକ ଭଳି ବିଦ୍ୟୁତ୍ ମଧ୍ୟ ଶକ୍ତିର ଏକ ରୂପାନ୍ତର । ବୈଦ୍ୟୁତିକ ଶକ୍ତି-ଉତ୍ପାଦକ କୌଣସି କାରଖାନାକୁ ଗଲେ ଦେଖିପାରିବ ଯେ, ସେଠାରେ ଗୋଟିଏ ଯନ୍ତ୍ର ଅବିରତ ଘୂର୍ଣ୍ଣିତ ହେଉଅଛି । ଏହାକୁ ଜେନେରେଟର୍ ବା ଉତ୍ପାଦକ ଯନ୍ତ୍ର ବୋଲଯାଏ । ଏହି ଯନ୍ତ୍ରର ଘୂର୍ଣ୍ଣନ ହେତୁ ବୈଦ୍ୟୁତିକ ଶକ୍ତି ଉତ୍ପନ୍ନ ହୁଏ ଓ ଧାତୁନିର୍ମିତ ତାରଦ୍ୱାରା ସେହି ଶକ୍ତି ସ୍ଥାନାନ୍ତରକୁ ପ୍ରେରିତ ହୋଇ ବିଭିନ୍ନ କାର୍ଯ୍ୟରେ ନିୟୋଜିତ ହୁଏ ।

ଉତ୍ପାଦକ ଯନ୍ତ୍ରର ଘୂର୍ଣ୍ଣନ ଲାଗି ସାଧାରଣତଃ ବାଷ୍ପ କିମ୍ବା ଜଳସ୍ରୋତର ସାହାଯ୍ୟ ଗ୍ରହଣ କରାଯାଇଥାଏ । ଏହାଛଡ଼ା ପ୍ରବାହିତ ବାୟୁଦ୍ୱାରା ଏହି କାର୍ଯ୍ୟ ମଧ୍ୟ ସାଧିତ ହୋଇପାରେ । ବାଷ୍ପର ଉତ୍ପତ୍ତି ଲାଗି ପ୍ରଥମେ କୋଇଲା ବା ପେଟ୍ରୋଲ୍ ଜାଳିବା ଆବଶ୍ୟକ । ଏହା ଯେପରି ଶ୍ରମସାଧ୍ୟ, ସେହିପରି ମଧ୍ୟ ବ୍ୟୟସାପେକ୍ଷ; କିନ୍ତୁ ଯେଉଁଠାରେ ନୈସର୍ଗିକ ଜଳପ୍ରପାତ ଥାଏ, ସେଠାରେ ଏହି କାର୍ଯ୍ୟ ସ୍ୱଳ୍ପବ୍ୟୟରେ ଓ ଅନାୟାସରେ ସାଧିତ ହୁଏ । କୌଣସି କୌଣସି ସ୍ଥାନରେ ନଦୀସ୍ରୋତ ଉଚ୍ଚସ୍ଥାନରୁ ନିମ୍ନକୁ ପତିତହୋଇ ଜଳପ୍ରପାତର ସୃଷ୍ଟି କରିଥାଏ । ସେହି ସ୍ଥାନମାନଙ୍କରେ ଉତ୍ପାଦକ ଯନ୍ତ୍ର ସ୍ଥାପନ କଲେ ତାହାର ଘୂର୍ଣ୍ଣନ ଲାଗି ଅଧିକ ବ୍ୟୟ ବା ପରିଶ୍ରମ ଆବଶ୍ୟକ ହୁଏ ନାହିଁ । ମନୁଷ୍ୟ ପ୍ରାକୃତିକ ଜଳପ୍ରପାତକୁ ଅନେକ ସ୍ଥଳରେ ବୈଦ୍ୟୁତିକ ଶକ୍ତିର ଉତ୍ପାଦନ କାର୍ଯ୍ୟରେ ନିୟୋଜିତ କରିଅଛି । ଏତଦ୍‌ବ୍ୟତୀତ ସେ ସ୍ଥଳବିଶେଷରେ ଜଳଭଣ୍ଡାର ନିର୍ମାଣ କରି ସେଥିରୁ କୃତ୍ରିମ ଜଳପ୍ରପାତଦ୍ୱାରା ମଧ୍ୟ

ବୈଦ୍ୟୁତିକ ଶକ୍ତି ଉତ୍ପାଦନ କରୁଅଛି । ବୋମ୍ବାଇ ଉପକୂଳରେ ଟାଟା କମ୍ପାନୀ ଏହିପରି ଜଳଭଣ୍ଡାର ନିର୍ମାଣ କରି ସେଥିରୁ କୃତ୍ରିମ ଜଳପ୍ରପାତଦ୍ୱାରା ଯେଉଁ ବୈଦ୍ୟୁତିକ ଶକ୍ତି ଉତ୍ପାଦନ କରୁଅଛନ୍ତି, ତଦ୍ୱାରା ବୋମ୍ବାଇ ସହରର ବହୁ କାରଖାନା ଚାଳିତ ହୁଏ ।

କୃତ୍ରିମ ଜଳପ୍ରପାତ ସାହାଯ୍ୟରେ ବୈଦ୍ୟୁତିକ ଶକ୍ତିର ଉତ୍ପାଦନ ପାଇଁ ପ୍ରଥମେ ଗୋଟିଏ ପ୍ରକାଣ୍ଡ ଜଳଭଣ୍ଡାର ଗଠନ କରାଯାଏ ଏବଂ ବର୍ଷର ସବୁ ସମୟରେ ଯେପରି ଏହି ଭଣ୍ଡାର ଜଳପୂର୍ଣ୍ଣ ହୋଇ ରହିବ, ତାହାର ବ୍ୟବସ୍ଥା କରାଯାଏ । କୌଣସି କୌଣସି ନଦୀର ଗତିପଥରେ ଏକ କିମ୍ବା ଏକାଧିକ ସୁଦୃଢ଼ ଉଚ୍ଚ ବନ୍ଧ ବା ପ୍ରାଚୀର ନିର୍ମାଣ ଦ୍ୱାରା ନଦୀର ଜଳକୁ ଅବରୁଦ୍ଧ କରି ସଞ୍ଚିତ କରାଯାଇପାରେ । ଜଳଭଣ୍ଡାରରୁ ବିଭିନ୍ନ ସ୍ଥାନକୁ ଜଳ ନେବା ଉଦ୍ଦେଶ୍ୟରେ ନାନା ଦିଗରେ କେନାଲ୍ ଖନନ କରାଯାଇଥାଏ । ପ୍ରାଚୀରଗାତ୍ରରେ ବଡ଼ ବଡ଼ କେତେକ



[ ଜଳପ୍ରପାତ ]

ଛିଦ୍ର ଥାଏ । ସଂଗୃହୀତ ଜଳ ଏହି ଛିଦ୍ରମାନଙ୍କ ବାଟେ ପ୍ରଖରବେଗରେ ପ୍ରବାହିତ ହୋଇ କୃତ୍ରିମ ଜଳପ୍ରପାତ ସୃଷ୍ଟି କରେ । ପ୍ରତ୍ୟେକ ରନ୍ଧ୍ର ନିକଟରେ ଗୋଟିଏ ଲେଖାଏଁ ଚକ୍ର ଅବସ୍ଥାପିତ ହୋଇଥାଏ । ପ୍ରପାତର ଜଳପତନ ଫଳରେ ଚକ୍ର-ଗୁଡ଼ିକ ଘୂର୍ଣ୍ଣିତ ହୁଏ । ଏହି ଚକ୍ରମାନଙ୍କ ସହିତ ଦୂରସ୍ଥିତ ଉତ୍ପାଦକ ଯନ୍ତ୍ରର ଚକ୍ରମାନଙ୍କର ସଂଯୋଗ ଥିବାରୁ ସେଗୁଡ଼ିକ ମଧ୍ୟ ଘୂର୍ଣ୍ଣିତ ହୁଅନ୍ତି ଏବଂ ତାହାଦ୍ୱାରା ବୈଦ୍ୟୁତିକ ଶକ୍ତିର ଉତ୍ପତ୍ତି ହୁଏ ।

ପୃଥିବୀର ଅଧିକାଂଶ ପ୍ରାକୃତିକ ଜଳପ୍ରପାତ ଏହିପରି ନିୟନ୍ତ୍ରିତ ହୋଇ ବୈଦ୍ୟୁତିକ ଶକ୍ତି ଉତ୍ପାଦନରେ ବ୍ୟବହୃତ ହେଉଅଛି । ଯୁକ୍ତରାଷ୍ଟ୍ର ଓ କାନଡ଼ାର ସୀମାରୂପେ ଅବସ୍ଥିତ ନାଏଗ୍ରା ଜଳପ୍ରପାତ ପୃଥିବୀର ବିଖ୍ୟାତ ଜଳପ୍ରପାତମାନଙ୍କ ମଧ୍ୟରୁ ଅନ୍ୟତମ । ଏଥିରୁ ଯେଉଁ ବୈଦ୍ୟୁତିକ ଶକ୍ତି ଉତ୍ପାଦିତ ହୁଏ, ତାହା ଶତ ଶତ ମାଇଲ୍ ଦୂରକୁ ନିଆଯାଇ ମନୁଷ୍ୟର ବ୍ୟବହାରରେ ଲାଗୁଅଛି । ଓଡ଼ିଶା ଓ ମାନ୍ଦ୍ରାଜ ରାଜ୍ୟର ସୀମାରୂପେ ଅବସ୍ଥିତ ମାଛକୁଣ୍ଡ ନଦୀରେ ଥିବା ଡୁଡୁମା ଜଳପ୍ରପାତକୁ ନିୟନ୍ତ୍ରିତ କରି ବୈଦ୍ୟୁତିକ ଶକ୍ତି ଉତ୍ପାଦନ କରିବା ଲାଗି ପ୍ରୟାସ ଚାଲିଅଛି । ମାଛକୁଣ୍ଡ ଯୋଜନା ପୂର୍ଣ୍ଣତା ଲାଭ କଲେ ମାନ୍ଦ୍ରାଜ ଓ ଓଡ଼ିଶାର ଅଧିକାଂଶ ଅଞ୍ଚଳ ଅକ୍ଲେଶରେ ଓ ସ୍ୱଳ୍ପବ୍ୟୟରେ ବୈଦ୍ୟୁତିକ ଶକ୍ତି ପାଇପାରିବ ଓ ତଦ୍ଦ୍ୱାରା ଉକ୍ତ ରାଜ୍ୟଦ୍ୱୟର ବହୁ କଳକାରଖାନା ଚାଲିପାରିବ ।

ସମ୍ବଲପୁରର ହୀରାକୁଦଠାରେ ମହାନଦୀରେ ଗୋଟିଏ ପ୍ରକାଣ୍ଡ ପ୍ରାଚୀର ନିର୍ମିତ ହୋଇ ଯେଉଁ ଜଳଭଣ୍ଡାର ସୃଷ୍ଟି କରାଯାଉଅଛି, ସେଥିରୁ ମଧ୍ୟ ବୈଦ୍ୟୁତିକ ଶକ୍ତିର ଉତ୍ପାଦନ ଲାଗି ବ୍ୟବସ୍ଥା ହେଉଅଛି । ହୀରାକୁଦ ଯୋଜନା କାର୍ଯ୍ୟରେ

ପରିଣତ ହେଲାପରେ ମହାନଦୀର ଜଳ ନିୟନ୍ତ୍ରିତ ହୋଇ-ପାରିବ । ବର୍ଷାକାଳରେ ମହାନଦୀର ଯେଉଁ ବିପୁଳ ଜଳରାଶି ଉପକୂଳ ଅଞ୍ଚଳରେ ଘୋର ବନ୍ୟାସ୍ରୋତ ସୃଷ୍ଟି କରି ଅସଂଖ୍ୟ ଲୋକଙ୍କର ଘରଦ୍ୱାର ଭସାଇ ନିଏ ଓ ଶସ୍ୟକ୍ଷେତ୍ର ନଷ୍ଟ କରିଦିଏ, ତାହା ସଞ୍ଚିତ ହୋଇ କେନାଲଦ୍ୱାରା ଗ୍ରୀଷ୍ମକାଳରେ ସହସ୍ର ସହସ୍ର ଏକର ଜମିରେ ଜଳସେଚନ ଉଦ୍ଦେଶ୍ୟରେ ବ୍ୟବହୃତ ହୋଇପାରିବ ଏବଂ ତତ୍‌ସହିତ ବୈଦ୍ୟୁତିକ ଶକ୍ତି ଉତ୍ପାଦନ କରି କଳକାରଖାନା ଚଳାଇବାରେ ଓ ନାନା ସ୍ଥାନକୁ ଆଲୋକ ଯୋଗାଇବାରେ ସାହାଯ୍ୟ କରିବ ।

ମହାନଦୀ ପରି ଭାରତର ଅନ୍ୟାନ୍ୟ କେତେକ ନଦୀରେ ଏହିପରି ବୈଦ୍ୟୁତିକ ଶକ୍ତି ଉତ୍ପାଦନ ଓ ଜଳସେଚନ ଅଭିପ୍ରାୟରେ ବନ୍ଧ ପକାଇବାର ବ୍ୟବସ୍ଥା କରାଯାଉଅଛି । କୃଷ୍ଣା ଓ ଦାମୋଦର ନଦୀରେ ଏହିପ୍ରକାର କାର୍ଯ୍ୟ ଆରମ୍ଭ ହୋଇଅଛି ।

ଶିଳ୍ପର ଉନ୍ନତି ଲାଗି ବୈଦ୍ୟୁତିକ ଶକ୍ତିର ପ୍ରୟୋଜନୀୟତା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ । ଯେଉଁଠାରେ ବୈଦ୍ୟୁତିକ ଶକ୍ତି ଯେତେ ସୁଲଭ, ସେଠାରେ ଶିଳ୍ପୋତ୍ପନ୍ନ ଦ୍ରବ୍ୟ ସେତିକି ସୁଲଭ ହେବା ସ୍ୱାଭାବିକ । ଆଧୁନିକ ଯୁଗରେ ଯନ୍ତ୍ରଶିଳ୍ପର ଯେପରି ପ୍ରାଧାନ୍ୟ ଘଟିଅଛି, ସେଥିରେ ସୁଲଭ ବୈଦ୍ୟୁତିକ ଶକ୍ତିର ଆବଶ୍ୟକତା କେହି ଅସ୍ୱୀକାର କରିପାରିବେ ନାହିଁ । ତେଣୁ ଜଳସ୍ରୋତରୁ ବୈଦ୍ୟୁତିକ ଶକ୍ତିର ଉତ୍ପାଦନପ୍ରତି ଏବେ ଅଧିକ ମନୋଯୋଗ ଦିଆଯାଉଅଛି ।

## ପ୍ରଶ୍ନ

୧ । ବୈଦ୍ୟୁତିକ ଶକ୍ତିଦ୍ୱାରା ଆମ୍ଭମାନଙ୍କର କି କି କାର୍ଯ୍ୟ ହୋଇ ପାରୁଅଛି ?

୨ । ଏ ଯୁଗକୁ ବିଜ୍ଞାନ-ଯୁଗ ଆଖ୍ୟା ଦେବା କାହିଁକି ଯୁକ୍ତିସଙ୍ଗତ ହେବ, ଉଦାହରଣ ସହ ବୁଝାଇଦିଅ ।

୩ । ତୁଙ୍ଗଭଦ୍ରା ଓ ହୀରାକୁଦ ଯୋଜନାଦ୍ୱାରା ଓଡ଼ିଶାର କି ଉପକାର ହେବ ବୋଲି ଆଶା କରାଯାଏ ?

୪ । ନିମ୍ନଲିଖିତ ପଦସମଷ୍ଟିଗୁଡ଼ିକର ବ୍ୟବହାର ବାକ୍ୟରେ ପ୍ରଦର୍ଶନ କର—

କଳ୍ପନାର ଅତୀତ, ବିପୁଳ ଜଳରାଶି, ବୈଦ୍ୟୁତିକ ଶକ୍ତିର ଉତ୍ପାଦନ, କୃତ୍ରିମ ଜଳପ୍ରପାତ, ଦୈନନ୍ଦିନ ଜୀବନ ।

୫ । ଶିଳ୍ପର ଉନ୍ନତିପାଇଁ ବିଦ୍ୟୁତ୍ ଶକ୍ତି କାହିଁକି ପ୍ରୟୋଜନୀୟ, ଏ ସମ୍ବନ୍ଧରେ ଏକ ଅନୁଚ୍ଛେଦ ଲେଖ ।

---

## ଚିଲିକାରେ ସନ୍ଧ୍ୟା

ଆଜି ମୁଁ ଦେଖୀର ପବିତ୍ର ଧାମରେ
ବୁଲିଅଛି ଖେଳେ ପ୍ରଶାନ୍ତ ପ୍ରାଣରେ ।
ଗୃହିଁ ଚଉଦିଗେ ଶରତ-ସୁଷମା
କ୍ଷୁଦ୍ର ମତି ଖୋଜ ନ ପାଏ ଉପମା ।
ଅଭିନବ ଛବି ବିରଚେ ସବିତା
ଅସ୍ତାଚଳ ପଥେ, ଦୁର୍ବଳ କବିତା ।
ବଖାଣିବ କାହୁଁ ବିଚିତ୍ର ଶୋଭନ
ସରଗ-ସୁନ୍ଦର ବିଶ୍ୱ-ବିମୋହନ ?
ଗୋଧନ ଅଡ଼ାଇ ଅଡ଼ାଇ ଗଉଡ଼
ବେଳେ ବେଳେ ଟେକି- ଦେଉ ସେ ଲଗୁଡ଼,

ବାଲେ ମଣ୍ଡ-ହଜା
ବନ୍ଧୁର ପଥରେ
ଗଉଡ଼ଅ ଚାଲ-
କୁଳ-କାଶଫୁଲ
ବେଳେ ବେଳେ ଧାଏ
ବାଜନ ବେଣୁ ତା
ପେଟଭରି ଖାଇ
ବାହୁଡ଼େ ଗୋଧନ
ଝୁଲି ଝୁଲି ଗୃଲେ
ମୁଖରବ ଢୋଲ
ଧୂଳି ଉଡ଼େ କେତେ
ଗୋଡ଼ାଏ ବାଛୁରି
ଶିଶୁ-ଅଙ୍ଗ, ଧାନ,
ଧୂଳି ଭାଗ୍ୟବାନେ
ସୁଲ୍ଲ ସୁଲ୍ଲ ସୁରେ
ପ୍ରଦୋଷ ଗାନରେ
'ଧନ ଗଲ, ଧନ
ଚାହିଁଛ କୁଳରେ
ଗଉଗଲ ବେଳୁ
ଶୋଭାରାଣୀ ତାର

ଗୋରୁ ପଛେ ଛଡ଼
ଧାଏଁ ଉଠିପଡ଼ି ।
ପଡର ଝାମ୍ପିରେ
ଖୋଷିଛୁ ମଣ୍ଟିରେ;
ମଧୁରେ ବଜାଇ
ମନକୁ ମଜାଇ ।
ଶୁଣି ଗୀତ ପଦେ
ଅତ ବ୍ୟଗ୍ରପଦେ;
ମନ ମଉଜରେ,
ବୃଷ ଥରେ ଥରେ ।
ଗୋଧନ-ପଦରୁ,
ପ୍ରେମରେ ପଛରୁ ।
ଗୋପ, ଗୋ-ପଦର
ମିଳଇ କେବଳ । *
ବହଇ ପବନ
ହୋଇ କାମଗନ ।
ଗଲ' ବୋଲି ଡାକ
ଶୁଣ ଚକ୍ରବାକୀ ।
ପଶ୍ଚିମ ଖରି
ମଥାପରୁ ପରି

---

* ଶିଶୁ-ଅଙ୍ଗ, ଧାନ, ଗୋପପୁର ଓ ଗୋପ-ପଦର ଧୂଳି ଏଗୁଡ଼ିକ ଭାଗ୍ୟବାନଙ୍କୁ କେବଳ ମିଳେ ବୋଲି ପ୍ରବାଦ ଅଛି ।

ଛାଡ଼ିନେଇ ଧନ- ମଣି-ମଥାମଣି
ଅତୁଲ୍ୟ ମୂଲ୍ୟର ଶିର ତାଙ୍କୁ ମଣି,
ବାହ୍ୟର ବିଧାନେ ନିଶା-ଆଗମରେ
ଅପହୃତ ହେବ କାଳେ ଦସ୍ୟୁକରେ;
ସେ ଭେନ ପ୍ରଥମେ ହେମ ଅବଗୁଣ୍ଠେ (୧)
ଆବୋରି ସୁରଙ୍ଗ ପାଟରେ ଯତନେ
ଗୁଡ଼ାଇ ଲଗାଇ ମଣିର ଜ୍ୟୋତିକୁ,
ପ୍ରାଣସହଚରୀ ବାରୁଣୀ-ରାଣୀକୁ
ଦେଇଦଏ; ଧୀରେ ପବନ-ତାନରେ
ଗୁନ ଗୁନ କେତେ କହେ ତା କାନରେ—
"ଅସ୍ତଗିରି-ପେଡ଼ି- ଅନ୍ତରାଳେ ଭରି
ଜଗିଥା ମଣିକୁ ମୋର ଭଲ କରି ।
ରଜନୀରେ ମୁଁ ଯେ କରିବି ଶୟନ,
ମୁଦି ହୋଇ ଆସେ କମଳ-ନୟନ । (୨)
କୋଟି ଚନ୍ଦ୍ରତାରା ପ୍ରଦୀପ ମୋ ଘରେ
ଜାଳିଦେଲି, ଜଗି ବସିଥିବୁ ଭଲେ ।"
ପ୍ରକୃତିର ଲୀଳା ଭୂଧରେ, ଗହନେ
ଦେଖଇ ମୁଁ ଜଳେ, ଗଗନେ, ପବନେ ।
ଚାହିଁଛି ମୁଁ ଦୂରେ ବାରୁଣୀ-ରାଣୀକୁ,
ଅଭିନବ ତାର ମଧୁର ଠାଣିକୁ ।

---

(୧) ସୂର୍ଯ୍ୟାସ୍ତ ପୂର୍ବରୁ ପଶ୍ଚିମାକାଶ ପ୍ରଥମେ ସ୍ୱର୍ଣ୍ଣମୟ ହୁଏ, ତାପରେ ରକ୍ତମୟ ହୁଏ ।

(୨) ସୂର୍ଯ୍ୟାସ୍ତ ସଙ୍ଗେ ସଙ୍ଗେ ପଦ୍ମ ମୁଦ୍ରିତ ହେବା ସ୍ୱାଭାବିକ ।

"ଦିବସ ରଜନୀ- ସଜନୀ ସଙ୍ଗରେ
ଶୁଭ ପରିଣୟେ ମାଧବ ରଙ୍ଗରେ"—
କାନେ କାନେ ମୋତେ କହିଲା ଏ କଥା
ଦେଖିବ ବୋଲି ମୁଁ ଟେକିଦେଲି ମଥା
ପଶ୍ଚିମଣିଗ୍ରଣ- ସୁନୀଳ ବେଦୀରେ
ସାଜେ ବଧୂ କେତେ ବିଚିତ୍ର ବିଧିରେ ।
ସୁନାର ସୋପାନ, ସୁନାର ତୋରଣ,
ସୁନାର ଗୃହୁଅ, ସୁନାର ସଦନ,
ସୁନାରଙ୍ଗ ନଦୀ, ସୁନାର ସରଣୀ,
ସୁନାମୟ ସାରା ପଶ୍ଚିମ ଧରଣୀ ।
ସାଜ ସବୁ ବାକ୍ କସ ଭଲ ମନେ
କହିଲେ, 'ଅଯଥା କଲଁି ଏସନେ ।
ଯହିଁରେ ପ୍ରକୃତ ପ୍ରେମର ପସରା,
ଆଡ଼ମ୍ବର ତହିଁ ସାଜେନାହିଁ ପରା ।
ସରଳ ଭାବରେ ସରଳ ପ୍ରେମର
ମିଳନ ଦେଖିବେ ଆଜ ମନାମର ।
ସଙ୍ଗେ ସଙ୍ଗେ ସବୁ ସୁନା ସଜସାଜ
ଲଚିଲ କୁହୁକ- ସମ ପାଇ ଲଜ ।
ବାଲିଶୁଅ-ବଧୂ ମଧୁର ସଙ୍ଗୀତ
ଗାଇ ନୃତ୍ୟ କଲ ହୋଇ ପୁଲକିତ ।
ଢୁଳଢୁଳି ଦେଲ କୂଳ-କାନନରେ
ଢୁଳଢୁଳା-ବଧୂ ପାଦପଗହଳେ ।
କୁଳାସୁ-ବାଢ଼ୁଡ଼ା ବିହଙ୍ଗମ-ତାନେ
ଗାଇଲେ ମଧୁରେ ଦଗଙ୍ଗନାମାନେ ।

ସ୍ୱସ୍ତି ଶାନ୍ତିମସ୍ତୁ ମଙ୍ଗଳ ମନ୍ତ୍ରର
ପବନ-ପୁରୋଧା ପଢ଼ିଲେ ଜାକର ।
ନିଜେ ନିରାକାର ଅନନ୍ତ ମୂରତି
ଅର୍ପିଣ ପ୍ରେମିକ- ପ୍ରେମିକାଙ୍କ ହାତ
ଧବଳ ଚଞ୍ଚଳ ବଳାବଳୀ ଛଳେ
ପରିଣୟ-ମାଳ ପିନ୍ଧାଇଲେ ଗଳେ ।
ହିଡ଼ କୁଣ୍ଡ଼ଅରେ ଅନଳ ଦେବତା—
ସାକ୍ଷ୍ୟରେ ପ୍ରଭୁର ମଙ୍ଗଳ ବାରତା—
କାମ୍ନାବୀ ଗୋଚରେ ହୋଇଲା ମିଳନ;
ଧର୍ମଦେବ ରବି ଏକାଳେ ବହନ
ଗୃହ ଯାଉଥିଲେ, ତାଙ୍କୁ ଅଟକାଇ
ସାକ୍ଷୀଘରେ ଦେଲେ ନାମକୁ ଲେଖାଇ ।
ଯୋଗକୁ ଚନ୍ଦ୍ରମା ହେଲେ ପରବେଶ,
ଚନ୍ଦ୍ରବନ୍ଦାପନା- ବିଧି ହେଲା ଶେଷ ।
ତାରା-ଦୀପ ଘେନି ହୋଇ ଗୋଟି ଗୋଟି
ବନ୍ଦାଇଲେ ସୁର- ସୁନ୍ଦରୀଏ କୋଟି;
ପୁଣି ଧରଣୀଏ ଦୀପେ ଘରେ ଘରେ
ନବ ଦମ୍ପତିଙ୍କ ବନ୍ଦାଇଲେ ଖରେ ।
ବାଳମାଳେ 'ହୁକେ- ହୁକେ-ହୋ' କୁହାଟି
ରଚିଲେ ବାଲୁଆ- ଭିଟେ କରି ପାଟି ।
ମଙ୍ଗଳ ମିଳନ ଗଲା ଯେବେ ସରି,
ଦେବୀର ମନ୍ଦିରେ ମହାରୋଳ କରି
ବାଜିଲା ଠମକ ମୃଦଙ୍ଗ ମହୁରୀ,
'ଜୟ ମା ଜନନୀ' ପଡ଼ିଗଲା ହୁରି ।

ପଶିଲ ଦେବୀର ଚରଣେ ଶରଣ
ପ୍ରଦୋଷ ଅରତି କରି ଦରଶନ ।
ଡାକିଲ, "ଜନନି ! ମଙ୍ଗଳମୟି ମା !
ବୁଝୁଁ ଅକିଞ୍ଚନ ଥରେ ତୋ ମହିମା ।
କରୁଣା-କଟାକ୍ଷ ପଡୁ ତୋର ଥରେ
ଏ ଦିନ ଉତ୍କଳ- ସନ୍ତାନଙ୍କରେ ।
ଫେରିଆସୁ ଗତ ବଳ, ଯଶୋଧନ,
କରୁ ସେ ପୁଣି ମା, ଅସାଧ୍ୟ ସାଧନ ।
ସଭିଙ୍କ ଲାଗି ମୁଁ କରୁଛି ଗୁହାରି,
ମୋ ଦଶା, ବିଷାଦ ନୁହେଁ ମୋତେ ଭାରି ।"

## ପ୍ରଶ୍ନ

୧ । ତୁମେ ସୂର୍ଯ୍ୟାସ୍ତ ସମୟରେ ଏକ ନଦୀକୂଳରେ ଏକାକୀ ଭ୍ରମଣ କରୁଅଛ । ସେତେବେଳେ ଯେଉଁ ପ୍ରାକୃତିକ ଦୃଶ୍ୟଗୁଡ଼ିକ ତୁମର ଦୃଷ୍ଟି ଆକର୍ଷଣ କରିବ, ତାହାସବୁ ସଂକ୍ଷେପରେ ଗଦ୍ୟରେ ପ୍ରକାଶ କର ।

୨ । ଏ କବିତାରେ ସୂର୍ଯ୍ୟାସ୍ତ ସମୟକୁ କେଉଁ କେଉଁ ସାମାଜିକ ଉତ୍ସବ ସହିତ ତୁଳନା କରି ବର୍ଣ୍ଣନା କରାଯାଇଛି ? ପ୍ରତ୍ୟେକର ନାମ ଲେଖ ।

୩ । (କ) "ଯହିଁରେ ପ୍ରକୃତି......ସାକେ ନାହିଁ ପରି ।"
(ଖ) "ସଭିଙ୍କ ଲାଗି ମୁଁ......ନୁହେଁ ମୋତେ ଭାରି ।"
ପୂର୍ବାପର ସମ୍ପର୍କ ସହ ଏ ଦୁଇ ପଦର ଭାବ ସରଳ ଭାଷାରେ ପ୍ରକାଶ କର ।

୪ । ଯଶୋଧନ, କରୁଣା-କଟାକ୍ଷ, ସ୍ୱସ୍ତିଶାନ୍ତିମୟୀ, ମଧ୍ୟଦିନ, ବିଶ୍ୱବିମୋହନ—ଏଗୁଡ଼ିକର ସରଳାର୍ଥ କହ ।

# ଗ୍ରହ-ଜଗତରେ ଗସ୍ତ

ପୃଥିବୀର ଉପରସ୍ଥ ବାୟୁମଣ୍ଡଳକୁ ଅତିକ୍ରମ କରି କୋଟି କୋଟି ଜ୍ୟୋତିଷ୍କ-ବିମଣ୍ଡିତ ଅନନ୍ତ ମହାଶୂନ୍ୟ ମଧ୍ୟରେ ବିଚରଣ କରିବାକୁ ମାନବ ବହୁ ଦିନରୁ ଚେଷ୍ଟା କରି ଆସୁଅଛି । ଏହି ପ୍ରଚେଷ୍ଟା ଏ ପର୍ଯ୍ୟନ୍ତ ସଫଳ ହୋଇ ନ ଥିଲେହେଁ ମନୁଷ୍ୟ କ୍ରମେ ଲକ୍ଷ୍ୟ ସାଧନ ଦିଗରେ ଅଦମ୍ୟ ଉତ୍ସାହରେ ଅଗ୍ରସର ହେଉଅଛି । ଶୂନ୍ୟ ଭ୍ରମଣରେ ଯେଉଁ ସମସ୍ତ ବାଧାବିଘ୍ନ ବିଦ୍ୟମାନ, ସେ ସମସ୍ତ ସାଧାରଣ ଧରଣର ନୁହେଁ ସତ୍ୟ; କିନ୍ତୁ ଏ ଭଳି ଅସଂଖ୍ୟ ଅସୁବିଧାକୁ ଅତିକ୍ରମ କରି ମନୁଷ୍ୟ କ୍ରମେ ଯେଉଁ ଜ୍ଞାନ ଓ ଅଭିଜ୍ଞତା ଅର୍ଜନ କରି ଚାଲିଛି, ତାହା ତାକୁ ଏହି ଦୁଃସାଧ୍ୟ ପ୍ରଯତ୍ନରେ ଯେ ଦିନେ ବିଜୟଶ୍ରୀମଣ୍ଡିତ କରିବ, ଏଥିରେ ସନ୍ଦେହ ନାହିଁ ।

ପୃଥିବୀକୁ ବେଷ୍ଟନ କରି ପ୍ରାୟ ଦଶମାଇଲ ବ୍ୟାପୀ ବାୟୁ-ମଣ୍ଡଳ ରହିଅଛି ଏବଂ ତାହା ଉପରକୁ ଆଉ ପନ୍ଦର ମାଇଲ୍ ପର୍ଯ୍ୟନ୍ତ ଲଘୁବାତମଣ୍ଡଳ ବିସ୍ତୃତ । ଅବଶ୍ୟ ବ୍ୟୋମଯାନ ସାହାଯ୍ୟରେ ମନୁଷ୍ୟ ଲଘୁବାତମଣ୍ଡଳରେ ପ୍ରବେଶ କରି ନିରାପଦରେ ଫେରି ଆସି ପାରିଅଛି; କିନ୍ତୁ ଗ୍ରହ, ଉପଗ୍ରହମାନଙ୍କ ନିକଟବର୍ତ୍ତୀ ହେବା ତ ପନ୍ଦର କୋଡ଼ିଏ ମାଇଲ ଦୂରତ୍ୱର କଥା ନୁହେଁ; କୋଟି କୋଟି ମାଇଲର ବ୍ୟବଧାନ ପୃଥିବୀ ଓ ସେମାନଙ୍କ ମଧ୍ୟରେ ବିଦ୍ୟମାନ । ପୃଥିବୀପୃଷ୍ଠରୁ ତାହାର ଉପଗ୍ରହ ଚନ୍ଦ୍ରର ଦୂରତା ଦୁଇ ଲକ୍ଷ ଅଣତିରିଶ ହଜାର ମାଇଲ, ଶୁକ୍ରର ଦୂରତା ଦୁଇକୋଟି ଷାଠିଏ ଲକ୍ଷ ମାଇଲ ଏବଂ ମଙ୍ଗଳର ଦୂରତା ଚାରି କୋଟି ନବେ ଲକ୍ଷ ମାଇଲ । ଏହିମାନେହିଁ ପୃଥିବୀର

ନିକଟତମ ଗ୍ରହ ବା ଉପଗ୍ରହ ରୂପେ ଗଣାଯାନ୍ତି । ତେଣୁ ନିକଟତମ ଉପଗ୍ରହ ଚନ୍ଦ୍ରରେ ଅବତରଣ କରିବାକୁ ହେଲେ ମଧ୍ୟ ବର୍ତ୍ତମାନର ଦ୍ରୁତତମ ବିମାନ କାର୍ଯ୍ୟକାରୀ ହେବ ନାହିଁ; କାରଣ ଏହା କେବଳ ବାୟୁମଣ୍ଡଳରେ ଗତି କରିବାପାଇଁ ଗଢ଼ାଯାଇଅଛି । ବାୟୁହୀନ ମହାଶୂନ୍ୟମଧ୍ୟରେ ଗତି କରିବାକୁ ହେଲେ ସମ୍ପୂର୍ଣ୍ଣ ନୂତନ ଧରଣର ବିମାନ ଆବଶ୍ୟକ ।

ମହାଶୂନ୍ୟମଧ୍ୟରେ ଗତି କରି ଏହି କଳ୍ପନାତୀତ ପଥ ଅତିକ୍ରମ କରିବା ମାନବ ପକ୍ଷରେ ଯେଉଁସବୁ କାରଣରୁ ଅସମ୍ଭବ ବୋଧହୁଏ, ସେଥିରୁ କେତେ ଗୋଟି ନିମ୍ନରେ ବର୍ଣ୍ଣିତ ହେଉଅଛି ।

ଉଇତର ନଭୋମଣ୍ଡଳରେ ବାୟୁ ନାହିଁ । ବାୟୁହୀନ ସ୍ଥାନରେ ଗତି କରିବା ଯେକୌଣସି ପାର୍ଥିବ ପଦାର୍ଥ ପକ୍ଷରେ ଅସମ୍ଭବ । କାତ ଓ ଅହୁଲ ସାହାଯ୍ୟରେ ଯଥାକ୍ରମେ ଭୂମି ଓ ଜଳରେ ଗୃପ ଦେଲେ ନୌକା ଗତି କରେ । ପକ୍ଷୀ ଓ ବ୍ୟୋମଯାନ ସେହିପରି ବାୟୁସ୍ତର ଉପରେ ଗତି କରନ୍ତି । ମାତ୍ର ଯେଉଁ ଶୂନ୍ୟରେ ବାୟୁ ମଧ୍ୟ ନାହିଁ, ସେଠାରେ କାହାଉପରେ ଗୃପ ପ୍ରୟୋଗ କରି ବିମାନ ଅଗ୍ରଗତି କରିପାରିବ ?

ହାବେଲୀ ବାଣ ଆମ୍ଭମାନଙ୍କ ନିକଟରେ ସୁପରିଚିତ । ଏହା କୌଣସି ଯନ୍ତ୍ର ବା ପକ୍ଷଦ୍ୱାରା ଗ୍ଳଳିତ ନ ହୋଇ ବାରୁଦର ଶକ୍ତି-ସାହାଯ୍ୟରେ ଊର୍ଦ୍ଧ୍ୱଗାମୀ ହୋଇଥାଏ । ସେହି ପ୍ରଣାଳୀରେ ପ୍ରସ୍ତୁତ ରକେଟ୍ ବା ହାବେଲୀପୋତ ବାୟୁଶୂନ୍ୟ ସ୍ଥାନରେ ସହଜରେ—ବରଂ ବାୟୁମଣ୍ଡଳ ଅପେକ୍ଷା ଅଧିକ ସହଜରେ—ଗତି କରିପାରିବ ବୋଲି ବିଶେଷଜ୍ଞମାନେ ବର୍ତ୍ତମାନ ପ୍ରମାଣ କରିଅଛନ୍ତି । ଏହି ରକେଟ୍ ଠିକ୍ ନିମ୍ନମୁଖ କାହାଳୀପରି । ଏହାର ଉପରିଭାଗ କ୍ରମଶଃ

ସୂକ୍ଷ୍ମ ଓ ନିମ୍ନଭାଗ ସ୍ଥୂଳ । ଏଥିରେ ବାରୁଦ ଗ୍ୟାସ ବା ଅନ୍ୟାନ୍ୟ ବିସ୍ଫୋରକ ଦ୍ରବ୍ୟ ପୂର୍ଣ୍ଣ ହୋଇଥାଏ । ଅଗ୍ନି ସଂସ୍ପର୍ଶରେ ବାରୁଦର ବିସ୍ଫୋରଣ ହେଲେ ରକେଟ୍‌ଟି ଉପରକୁ ଚମକି ଯାଏ ।

ଗୁଳି ଫୁଟିଲାବେଳେ ବନ୍ଧୁକଟି ପଛକୁ ଧକ୍‌କା ମାରେ । ଏହା ଗୁଳିନିର୍ଗମନର ପ୍ରତିକ୍ରିୟା । ବାୟୁର ଏହା ସଙ୍ଗେ କୌଣସି ସମ୍ପର୍କ ନାହିଁ । ଯଦି ଅତି ମସୃଣ କୌଣସି ଗୋଟିଏ ସମତଳ-ଉପରେ ଚକଲଗା ବଡ଼ ତୋପଟିଏ ରଖି ବାରୁଦରେ ଅଗ୍ନି ସଂଯୋଗ କରାଯାଏ, ତେବେ ବିସ୍ଫୋରଣ ହେବା ସଙ୍ଗେ ସଙ୍ଗେ ତୋପଟି ବିପରୀତ ଦିଗରେ ଦ୍ରୁତ ଗତିରେ ଧାବମାନ ହୁଏ । ଠିକ୍ ସେହିପରି ରକେଟ୍ ବିସ୍ଫୋରଣର ପ୍ରତିଘାତରେ ଉପରକୁ ଉଠିଯାଏ । ଏଠାରେ ସ୍ମରଣ ରଖିବା ଉଚିତ ଯେ ରକେଟ୍ ପବନକୁ ପଛକୁ ଠେଲି ଗତି କରେ ନାହିଁ । ବିସ୍ଫୋରଣର ପ୍ରତିଘାତ ତାହାକୁ ଗତି ଦାନ କରେ । ତେଣୁ ଶୂନ୍ୟ ପଥରେ ବାୟୁର ପ୍ରତିବନ୍ଧକରୁ ମୁକ୍ତ ହୋଇ ତାହା କ୍ଷିପ୍ରତର ଗତି ଲାଭ କରିପାରିବ ବୋଲି ସ୍ଥିର କରାଯାଇଅଛି ।

ଦ୍ୱିତୀୟ ଅସୁବିଧା ପୃଥିବୀର ମାଧ୍ୟାକର୍ଷଣ ଶକ୍ତି । ଏହି ଶକ୍ତିବଳରେ ପ୍ରକାଣ୍ଡ ଜ୍ୟୋତିଷ୍କମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱୀ ହୋଇ ପୃଥିବୀ ଆକାଶ ମଧ୍ୟରେ ଅବସ୍ଥିତ । ଗ୍ରହ, ଉପଗ୍ରହମାନଙ୍କର ମଧ୍ୟ ନିଜର ଆକର୍ଷଣ ଶକ୍ତି ଥିବାରୁ ସେମାନେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିର ପ୍ରତିରୋଧ କରି ସ୍ୱ ସ୍ୱ କକ୍ଷରେ ଗତି କରିପାରୁଛନ୍ତି । ତେବେ ମନୁଷ୍ୟ ଦ୍ୱାରା ପ୍ରସ୍ତୁତ ଏହି ବିମାନ ପୃଥିବୀର ପ୍ରଚଣ୍ଡ ଆକର୍ଷଣ ଶକ୍ତିକୁ ପରାଜିତ କରି ମହାଶୂନ୍ୟରେ ପ୍ରବେଶ କରିପାରିବ କିପରି ?

କ୍ଷୁଣ୍ଣାସ୍ତିତଃ ଯଦି ଅନ୍ତତଃ ନିକଟତମ ଗ୍ରହକୁ ଯାଇ ପ୍ରତ୍ୟାବର୍ତ୍ତନ କରିବାକୁ ହୁଏ, ତେବେ ଆମର ବିମାନ ଅପରିସୀମ ବେଗରେ ଗତି କରିବା ବାଞ୍ଛନୀୟ; ନଚେତ୍ ଯାତ୍ରୀ ସ୍ୱୀୟ ଜୀବନକାଳମଧ୍ୟରେ ଏହି ଅସାଧ୍ୟ ସାଧନ କରିପାରିବ ନାହିଁ। ହିସାବଦ୍ୱାରା ଦେଖାଯାଇଅଛି ଯେ, ଅନ୍ତତଃ ଘଣ୍ଟାକେ ପଚିଶ ହଜାର ମାଇଲ୍ ଗତିଶୀଳ ବିମାନ କେବଳ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିକୁ ପରାଜିତ କରି ଶୂନ୍ୟରାଜ୍ୟରେ ପ୍ରବେଶ କରିପାରେ ଏବଂ ନିକଟତମ ଗ୍ରହକୁ ସ୍ପର୍ଶ କରି ପ୍ରତ୍ୟାଗତ ହୋଇପାରେ। ତେବେ ଏହିଠାରେ ଚତୁର୍ଥ ବିପଦ କଥା ସ୍ୱତଃ ମନରେ ଜାଗରିତ ହୁଏ।

ପୃଥିବୀର ମାଧ୍ୟାକର୍ଷଣରୁ ମୁକ୍ତ ଲାଭ କରି ମହାଶୂନ୍ୟ ମଧ୍ୟରେ ଘଣ୍ଟାରେ ପଚିଶ ହଜାର ମାଇଲ୍ ଗତି କଲାଭଳି ରକେଟ୍ ନିର୍ମିତ ହେଲେ ସୁଦ୍ଧା ଏଥିର ଯାତ୍ରୀ ଏ ଅଚିନ୍ତନୀୟ ଗତିର ଗୁପ ସହ୍ୟ କରିପାରିବ କି? କୌଣସି ମାନବ ଯେ ଏତେ ଦ୍ରୁତଗାମୀ ଯାନ ଆରୋହଣ କରି ଜୀବିତ ରହିପାରିବ ନାହିଁ, ଏହା ସ୍ୱତଃସିଦ୍ଧ ବୋଧ ହୁଏ; ମାତ୍ର ଜର୍ମାନ ବୈଜ୍ଞାନିକମାନେ ପରୀକ୍ଷା କରି ପ୍ରମାଣ କରିଅଛନ୍ତି ଯେ ରକେଟ୍‌ର ଗତିକୁ ଯଦି କ୍ରମେ ବୃଦ୍ଧି କରାଯାଇ ଆଠ ମିନିଟ ପରେ ପୂର୍ଣ୍ଣ ବେଗ ଦିଆଯାଏ, ତେବେ ଏଥିର ଯାତ୍ରୀ ଜୀବିତ ରହିପାରନ୍ତି। ଏହି ତଥ୍ୟ ଆଶାଜନକ ହୋଇ ନ ଥିଲେ ରକେଟ୍ ସମ୍ବନ୍ଧରେ ଆଉ ଅଧିକ ପରୀକ୍ଷା ବା ଅଗ୍ରଗତି ଆବଶ୍ୟକ ହୋଇ ନ ଥାନ୍ତା।

ପୁନଶ୍ଚ ଏତେ ଦ୍ରୁତଗତିରେ ଯାଉଥିବା ରକେଟ୍ ବାୟୁର ସଂଘର୍ଷ ଫଳରେ ଉତ୍ତପ୍ତ ହୋଇ କିମ୍ବା ସୂର୍ଯ୍ୟକିରଣର ପ୍ରଖର ତାପରେ ଦଗ୍ଧ ହୋଇ ଭସ୍ମ ହୋଇଯାଇପାରେ। ଏହି

ବିପଦକୁ ଅତିକ୍ରମ କରିବା ନିମିତ୍ତ ପ୍ରତିକାରର ପନ୍ଥା ମଧ୍ୟ ଉଦ୍ଭାବିତ ହୋଇଅଛି । ଥର୍ମୋପ୍ଲାଷ୍ଟ ଶୀତରେ ରକେଟ୍-ବିମାନକୁ ଦୁଇଟି ଆବରଣବିଶିଷ୍ଟ କରି ନିର୍ମାଣ କରାଗଲେ ଓ ଦୁଇ ସ୍ତରମଧ୍ୟରେ ବାୟୁଶୂନ୍ୟ ସ୍ଥାନ ସୃଷ୍ଟି କରାଯାଇପାରିଲେ ବାହାରର ଉତ୍ତାପ ଆରୋହୀମାନଙ୍କର କିଛି କ୍ଷତି କରିପାରିବ ନାହିଁ ।

ଉଲ୍‌କାମାନଙ୍କ ସହ ସଂଘର୍ଷ ପୁଣି ଅନ୍ୟ ଏକ ଆତଙ୍କର କାରଣ ହୋଇଥାଏ । ଅଗଣିତ ଉଲ୍‌କା ମହାଶୂନ୍ୟରେ ପରିଭ୍ରମଣ କରୁଅଛନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ପୃଥିବୀର ବାୟୁମଣ୍ଡଳରେ ପ୍ରତି ମୁହୂର୍ତ୍ତରେ ପ୍ରବେଶ କରି ବାୟୁସଂଘର୍ଷରେ ଦଗ୍ଧୀଭୂତ ଓ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଆନ୍ତି । ରକେଟ୍-ପୋତ ସଙ୍ଗେ ମହାଶୂନ୍ୟମଧ୍ୟରେ ଯଦି ଗୋଟିଏ ପ୍ରକାଣ୍ଡ ଉଲ୍‌କାର ସଂଘର୍ଷ ଘଟେ, ତେବେ ପରିଣାମ ନିଶ୍ଚୟ ସାଂଘାତିକ ହେବ । କିନ୍ତୁ ପଣ୍ଡିତମାନେ କହନ୍ତି ଯେ, ଅନନ୍ତ ମହାଶୂନ୍ୟମଧ୍ୟରେ କ୍ଷୁଦ୍ର ରକେଟ୍ ସହିତ କୌଣସି ଉଲ୍‌କା-ସଂଘର୍ଷର ଆଶଙ୍କା କୋଟିକରେ ହୁଏତ ଗୋଟିଏ ହୋଇପାରେ ।

ଅନ୍ୟ ଏକ ବିପଦର କଥା ମଧ୍ୟ ଏଠାରେ ପ୍ରକାଶ କରାଯାଇପାରେ । ବାୟୁମଣ୍ଡଳ ଅତିକ୍ରମ କରି ଉପରକୁ ଉଠିବା ସଙ୍ଗେ ସଙ୍ଗେ ମନୁଷ୍ୟ ତାର ଓଜନ ହରାଇଥାଏ । ପୃଥିବୀର ମାଧ୍ୟାକର୍ଷଣ ଯୋଗୁଁହିଁ ପାର୍ଥିବ ଦ୍ରବ୍ୟର ଓଜନ୍ ଅନୁଭୂତ ହୁଏ । ମାଧ୍ୟାକର୍ଷଣ ଶକ୍ତିର ନ୍ୟୂନତା ଅନୁପାତରେ ପଦାର୍ଥର ଓଜନ ଲଘୁ ହୁଏ । ଯେଉଁଠାରେ ମାଧ୍ୟାକର୍ଷଣ ଶକ୍ତି ଆଦୌ ନାହିଁ, ସେଠାରେ ପଦାର୍ଥର ଓଜନ ମଧ୍ୟ ନ ଥାଏ । ଏହା ବିଜ୍ଞାନସମ୍ମତ ତଥ୍ୟ । ସୁତରାଂ ରକେଟ୍‌ଯାତ୍ରୀ ପୃଥିବୀର ଆକର୍ଷଣ-ସୀମା ଅତିକ୍ରମ କଲାପରେ ନିଜର କୌଣସି ଓଜନ ଅନୁଭବ କରିବ ନାହିଁ ।

ଏହାର ପ୍ରଭାବ ତାର ମନଉପରେ ପଡ଼ିପାରେ ସତ୍ୟ; କିନ୍ତୁ କୌଣସି ଶାରୀରିକ ଯନ୍ତ୍ରଣା ଏହାଦ୍ୱାରା ବୋଧ ହେବ ନାହିଁ ବୋଲି ଜଣାଯାଇଅଛି ।

ମହାଶୂନ୍ୟ ମଧ୍ୟରେ ଗତି କଲାବେଳେ ଦିଗ ନିରୂପଣ କରିବା ମଧ୍ୟ ଏକ ପ୍ରଧାନ ସମସ୍ୟା । ପଥଭ୍ରଷ୍ଟ ହେଲେ ରକେଟର ଅବସ୍ଥା କଣ ହେବ କୁହାଯାଇ ନ ପାରେ । ହୁଏତ ଏହା ଅନ୍ୟ କୌଣସି ଗ୍ରହର ଚତୁର୍ଦ୍ଦିଗରେ ଅନନ୍ତ କାଳ ପର୍ଯ୍ୟନ୍ତ ଘୂରିବାକୁ ଲାଗିବ । କିମ୍ବା ସୂର୍ଯ୍ୟମଣ୍ଡଳପ୍ରତି ଆକୃଷ୍ଟ ହୋଇ ପଥମଧ୍ୟରେ ଭସ୍ମୀଭୂତ ହୋଇଯିବ ଅଥବା ଅନ୍ୟ କୌଣସି ଜ୍ୟୋତିଷ୍କ-ଦେହରେ ଧକ୍କା ଲାଗି ଧୂଳିସାତ୍ ହୋଇଯିବ ।

ଏ ସମସ୍ତ କଥା ବିଚାର କଲେ ଆତ୍ମହତ୍ୟା କରିବାକୁ ପ୍ରସ୍ତୁତ ଥିବା ବ୍ୟକ୍ତିମାନଙ୍କ ବ୍ୟତୀତ ଅନ୍ୟ କେହି ଏ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ କଦାପି ସାହସ କରି ନ ପାରେ । କିନ୍ତୁ ରକେଟ୍-ବିଶେଷଜ୍ଞମାନେ କହନ୍ତି ଯେ, ଶୂନ୍ୟଭ୍ରମଣ ସମ୍ବନ୍ଧରେ ସେମାନଙ୍କର ଜ୍ଞାନ ବର୍ତ୍ତମାନ ପର୍ଯ୍ୟନ୍ତ ନିତାନ୍ତ ସୀମାବଦ୍ଧ ହେଲେହେଁ, ଶୂନ୍ୟମଣ୍ଡଳରେ ଦିଗ ନିର୍ଣ୍ଣୟ କରିବା ଯେ କଷ୍ଟକର ହେବ ନାହିଁ, ଏହା ନିଃସନ୍ଦେହ ।

ମନେ କର, ଉପରଲିଖିତ ସମସ୍ତ ବାଧାବିଘ୍ନ ଅତିକ୍ରମ କରିବାପାଇଁ ଉପାୟ ଉଦ୍ଭାବିତ ହେଲା । ତଥାପି ଗୋଟିଏ ପ୍ରଧାନ ଅସୁବିଧା ହେଉଛି ଯେ, ବାରୁଦଦ୍ୱାରା ରକେଟ୍ ଚଳାଇବା ସମ୍ପୂର୍ଣ୍ଣ ଅସମ୍ଭବ; କାରଣ ଏହା ଏକ ବିସ୍ଫୋରକ । ସୁତରାଂ ଏହାର ବ୍ୟବହାର ବିପଜ୍ଜନକ । ପେଟ୍ରୋଲକୁ ଯେପରି ଆବଶ୍ୟକତା ଅନୁଯାୟୀ ଇଞ୍ଜିନ୍‌ମଧ୍ୟକୁ ଛାଡ଼ିବାକୁ ହୁଏ, ବାରୁଦକୁ ସେପରି କରାଯାଇପାରେ ନାହିଁ । ଥରେ ଅଗ୍ନି ସଂଯୁକ୍ତ ହେଲେ ଏହା ଅଚ

ଚାଳକର ଅସୁବିଧାରେ ରହେ ନାହିଁ । ଏହିସବୁ କାରଣରୁ ବହୁ ବାରୁଦଚାଳିତ ରକେଟ୍ ପରୀକ୍ଷିତ ହେବା ପରେ ପ୍ରମାଣିତ ହୋଇଅଛି ଯେ, ସେଗୁଡ଼ିକ ଅତ୍ୟନ୍ତ ମାରାତ୍ମକ ।

ରକେଟ୍-ପୋତ ସମ୍ବନ୍ଧରେ ଯେତେ ପ୍ରକାରର ଅସୁବିଧା ଓ ତାର ଦୂରୀକରଣର ବ୍ୟବସ୍ଥା ଆଲୋଚିତ ହୋଇଅଛି, ତାହା ଅପେକ୍ଷା ଯଥେଷ୍ଟ ଅଧିକ ତଥ୍ୟ ଯେ ଏଥିଭିତରେ ଉଦ୍ଭାବିତ ହେଲଣି, ଏଥିରେ ସନ୍ଦେହ ନାହିଁ । ମାତ୍ର ଅଧିକାଂଶ ପରୀକ୍ଷା ଓ ଗବେଷଣା ଯୁଦ୍ଧବିଭାଗଦ୍ୱାରା ପରିଗୃହୀତ ହେଉଥିବାରୁ ତାହା ଗୋପନୀୟ ରଖାଯାଇ ଅଛି । ଯେଉଁପରମାଣୁକୁ ବର୍ତ୍ତମାନ ପୃଥିବୀରେ ଅଲୌକିକ ଶକ୍ତିର ଆଧାର ବୋଲି ଧରାଯାଇଅଛି, ତାହାର ଉପଯୁକ୍ତ ବ୍ୟବହାର ଫଳରେ ଦିନେ ମାନବ କେବଳ ଚନ୍ଦ୍ର, ଶୁକ୍ର ବା ମଙ୍ଗଳ ଗ୍ରହ କାହିଁକି, ଅସୀମ ନଭୋମଣ୍ଡଳରେ ଅବସ୍ଥିତ ଅନ୍ୟ ଗ୍ରହମାନଙ୍କୁ ମଧ୍ୟ ଗତି କରି ସେମାନଙ୍କ ସହିତ ପ୍ରତିବେଶୀ ସମ୍ପର୍କ ସ୍ଥାପନ କରିପାରିବ; କାରଣ ବୈଜ୍ଞାନିକମାନେ ଅଭିଧାନରୁ 'ଅସମ୍ଭବ' ଶବ୍ଦକୁ ଲୋପ କରିଦେବାପାଇଁ ବହୁ କାଳରୁ ସଚେଷ୍ଟ ହେଲେଣି ।

## ପ୍ରଶ୍ନ

୧ । ବାୟୁହୀନ ମହାଶୂନ୍ୟରେ ଗତି କରିବା କେଉଁସବୁ କାରଣରୁ ଅସମ୍ଭବ ବୋଧ ହୁଏ ? ସେ କାରଣସବୁ କେତେ ଦୂର ଯୁକ୍ତିଯୁକ୍ତ ?

୨ । ରକେଟ୍-ପୋତ ସମ୍ବନ୍ଧରେ ଏହି ପ୍ରବନ୍ଧରୁ ତୁମ୍ଭର କି ଧାରଣା ଜନ୍ମେ ?

୩ । "ବୈଜ୍ଞାନିକମାନେ ଅଭିଧାନରୁ......ହେଲେଣି ।"
ଏହି ବାକ୍ୟଟିର ସରଳାର୍ଥ ଲେଖ ।

୪ । ଉଦାହରଣ ଦେଇ ନିମ୍ନଲିଖିତ ପ୍ରତ୍ୟେକ ପଦଯୁଗ୍ମମଧ୍ୟରେ ଥିବା ପାର୍ଥକ୍ୟ ପ୍ରଦର୍ଶନ କର—
ଦୁଃସାଧ୍ୟ ଓ ଅସାଧ୍ୟ, ଗ୍ରହ ଓ ଉପଗ୍ରହ, କାତ ଓ ଅତୁଲ, ପରୀକ୍ଷା ଓ ଗବେଷଣା, ଯାନ ଓ ବାହନ, ଅକ୍ଷ ଓ କକ୍ଷ, ଅଗଣ୍ୟ ଓ ନଗଣ୍ୟ, ଲକ୍ଷ ଓ ଲକ୍ଷ୍ୟ ।

---

## ଭାରତୀୟ ଶିଳ୍ପ

ଭାରତ ଗୋଟିଏ କୃଷିପ୍ରଧାନ ଦେଶ ବୋଲି ସ୍ୱଦେଶ ଓ ବିଦେଶରେ ପରିଚିତ । ଏହାର ଅଧିକାଂଶ ଅଧିବାସୀ କୃଷିକାର୍ଯ୍ୟ ଦ୍ୱାରା ଜୀବିକା ନିର୍ବାହ କରନ୍ତି ସତ୍ୟ; କିନ୍ତୁ ତାହା ବୋଲି ଯେ ଶିଳ୍ପଜଗତରେ ଭାରତର ସ୍ଥାନ ନ ଥିଲା ବା ଏବେ ନାହିଁ, ଏପରି ମନେ କରିବା ଅସଙ୍ଗତ । ପ୍ରକୃତ ପକ୍ଷରେ ଭାରତ ଯେପରି କୃଷିପ୍ରଧାନ ଦେଶ, ସେହିପରି ମଧ୍ୟ ଶିଳ୍ପପ୍ରଧାନ ଦେଶ ।

ପ୍ରାୟ ଏକ ଶତ ବର୍ଷ ପୂର୍ବେ ଜଣେକ ପାଶ୍ଚାତ୍ୟ ପଣ୍ଡିତ ଲେଖିଥିଲେ ଯେ, ଭାରତକୁ କୃଷିପ୍ରଧାନ ଦେଶ ବୋଲି ଆଖ୍ୟା ଦେବାଦ୍ୱାରା ସଭ୍ୟତା-କ୍ଷେତ୍ରରେ ଭାରତର ଅବମାନନା କରାଯାଏ । ଭାରତ ଶିଳ୍ପପ୍ରଧାନ ଦେଶ; ଶତ ଶତ ବର୍ଷ ଧରି ଭାରତ ଶିଳ୍ପଦ୍ରବ୍ୟ ଉତ୍ପାଦନ କରି ଆସିଅଛି ଓ ଅନ୍ୟ କୌଣସି ଦେଶର ଶିଳ୍ପଦ୍ରବ୍ୟ ତତ୍କାଳୀନ ଭାରତୀୟ ଶିଳ୍ପଦ୍ରବ୍ୟ ସହିତ ପ୍ରତିଯୋଗିତା କରି ପାରି ନାହିଁ ।

ପାଶ୍ଚାତ୍ୟ ଦେଶର ପ୍ରସିଦ୍ଧ ସଂସ୍କୃତାଧ୍ୟାପକ ମନୀଷୀ ମାକ୍ସମୁଲର ଲେଖିଯାଇଅଛନ୍ତି—ଯଦି ମୋତେ ସମଗ୍ର ପୃଥିବୀ ଅନ୍ୱେଷଣ କରି ପ୍ରକୃତିଦ୍ୱାରା ଧନ-ଶକ୍ତି-ସୌନ୍ଦର୍ଯ୍ୟ-ବିମଣ୍ଡିତ,

ବେଦୋକ୍ତାଂଶରେ ଧର୍ମସ୍ୱର୍ଗପଦବାଚ୍ୟ ଗୋଟିଏ ସମୃଦ୍ଧିଶାଳୀ ଦେଶ ଅନ୍ୱେଷଣ କରିବାକୁ ପଡ଼େ, ତେବେ ମୁଁ ଭାରତକୁହିଁ ନିର୍ଦ୍ଦେଶ କରିବି ।

ବାସ୍ତବରେ ପ୍ରକୃତିରାଣୀ ଭାରତଉପରେ ତାଙ୍କର ସକଳ ବିଭବ ଅଜାଡ଼ି ଦେଇଅଛନ୍ତି । ସୁଦୂର ଅତୀତ କାଳରେ ଯେତେବେଳେ ମିଶରର ବିରାଟ ପିରାମିଡ଼ଗୁଡ଼ିକର ସୃଷ୍ଟି ହୋଇ ନ ଥିଲା, ଇଉରୋପୀୟ ସଭ୍ୟତାର ଜନନୀସ୍ୱରୂପିଣୀ ଗ୍ରୀକ୍ ଓ ରୋମାନ୍ ସଭ୍ୟତାର ଜନ୍ମ ହୋଇ ନ ଥିଲା, ସେତେବେଳେ ଭାରତ ଐଶ୍ୱର୍ଯ୍ୟ ଓ ଆଡ଼ମ୍ବରର ଉଚ୍ଚତମ ସୋପାନରେ ଆରୋହଣ କରିଥିଲା । ଭାରତୀୟ କୃଷକମାନେ ଯେପରି ଶସ୍ୟସଂପଦରେ ଧନୀ ଥିଲେ, ତାର ନିପୁଣ ଶିଳ୍ପୀମାନେ ମଧ୍ୟ ସେହିପରି ବିବିଧ ଶିଳ୍ପଦ୍ରବ୍ୟର ଉତ୍ପାଦନଦ୍ୱାରା ବିଭବଶାଳୀ ହୋଇଥିଲେ । ସୂକ୍ଷ୍ମ କାରୁକାର୍ଯ୍ୟ ଓ ସୌନ୍ଦର୍ଯ୍ୟ ବିଷୟରେ ସେହି ଶିଳ୍ପଦ୍ରବ୍ୟଗୁଡ଼ିକ ସେସମୟରେ ଜଗତରେ ଅତୁଳନୀୟ ଥିଲା । ଶତ ଶତ ବର୍ଷବ୍ୟାପୀ ଶିଳ୍ପବିକାଶ ପରେ ଆଧୁନିକ ଶିଳ୍ପୀମାନେ ଯେଉଁସବୁ ମନ୍ଦିର ବା ପ୍ରାସାଦ ପ୍ରଭୃତି ନିର୍ମାଣ କରୁଅଛନ୍ତି, ସେମାନଙ୍କ ତୁଳନାରେ ଅତୀତ କାଳର ସ୍ଥାପତ୍ୟ କି ସୌନ୍ଦର୍ଯ୍ୟ, କି ଦୃଢ଼ତା କୌଣସି ଦିଗରେ ଊଣା ନ ଥିଲା । ସେସମୟର କୌଣସି ପ୍ରାଚ୍ୟ ବା ପାଶ୍ଚାତ୍ୟ ଦେଶ ଶିଳ୍ପକଳାରେ ଭାରତର ତୁଳନୀୟ ନ ଥିଲା ଭାରତୀୟମାନେ ଅରଟ ସାହାଯ୍ୟରେ ସୂତା କାଟି ଯେଉଁ ସୂକ୍ଷ୍ମ ବସ୍ତ୍ର ବୟନ କରୁଥିଲେ, ତାହା ଏକ ସମୟରେ ଇଉରୋପୀୟ ରୂପସୀମାନଙ୍କର ଅତି ଆଦରର ବସ୍ତୁ ଥିଲା । ପ୍ରାଚୀନ କାବ୍ୟମାନଙ୍କରେ ବର୍ଣ୍ଣିତ ହୋଇଅଛି ଯେ, ସେ ସମୟରେ ଖଣ୍ଡିଏ ଶାଢ଼ୀ ଅକ୍ଳେଶରେ ଗୋଟିଏ ବାଉଁଶ-ନଳମଧ୍ୟରେ ରଖାଯାଇ ପାରୁଥିଲା ।

ଭାରତର ପଶମ ଓ ରେଶମ ବସ୍ତ୍ର ସମଗ୍ର ସଭ୍ୟ ଜାତି ବ୍ୟବହାର କରୁଥିଲେ । ଭାରତର ସ୍ୱର୍ଣ୍ଣ ଓ ରୌପ୍ୟନିର୍ମିତ ଅଳଙ୍କାର ତଥା ବିବିଧ ରତ୍ନ ବିଦେଶୀୟମାନେ ବହୁ ଅର୍ଥ ବିନିମୟରେ କ୍ରୟ କରୁଥିଲେ । ପାରସ୍ୟର ବଣିକମାନେ ଭାରତୀୟ ଶିଳ୍ପଦ୍ରବ୍ୟ ନେଇ ବିଦେଶରେ ବିକ୍ରୟ କରି ଲାଭବାନ୍ ହେଉଥିଲେ । ଭାରତୀୟ ଲୌହଜାତ ଦ୍ରବ୍ୟ ମଧ୍ୟ ଇଂଲଣ୍ଡରେ ଆଦୃତ ହେଉଥିଲା । ମୋଟ ଉପରେ ଭାରତୀୟ ଶିଳ୍ପପରିକାଷ୍ଠା ସମଗ୍ର ସଭ୍ୟ ଜଗତର ବିସ୍ମୟ ଉତ୍ପାଦନ କରିଥିଲା ।

ଭାରତର ଜାତିପ୍ରଥା ଏ ଦେଶର ଶିଳ୍ପବିକାଶ ଓ ସଂରକ୍ଷଣ ଦିଗରେ ଯଥେଷ୍ଟ ସାହାଯ୍ୟ କରି ଆସିଅଛି । ପୁତ୍ରପୌତ୍ରାଦିକ୍ରମେ ଗୋଟିଏ ଗୋଟିଏ ଶିଳ୍ପ ପରିବାରମଧ୍ୟରେ ଚାଲି ଆସୁଥିବାରୁ ତାହାର କ୍ରମୋନ୍ନତି ଘଟିଥିଲା । ଏବେ ମଧ୍ୟ ସେହି ପରମ୍ପରା ଚାଲିଆସିଛି । ଫଳରେ ନିରକ୍ଷର ଭାରତବାସୀ କୌଣସି ବୈଷୟିକ ବିଦ୍ୟାଳୟରେ ଶିକ୍ଷା ନ ପାଇ ମଧ୍ୟ ନିଜର କୌଳିକ ଶିଳ୍ପରେ କୃତିତ୍ୱ ପ୍ରଦର୍ଶନ କରିପାରୁଅଛି ।

କାଳକ୍ରମେ ଯନ୍ତ୍ରଶିଳ୍ପ ହସ୍ତଶିଳ୍ପର ସ୍ଥାନ ଅଧିକାର କରିଅଛି । ଯନ୍ତ୍ରଶିଳ୍ପର ପରିଚାଳନା ନିମନ୍ତେ ସୁଶିକ୍ଷିତ ଶ୍ରମିକ ତଥା ବୈଦ୍ୟୁତିକ ଶକ୍ତି ଓ ବାଷ୍ପୀୟ ଶକ୍ତି ଆବଶ୍ୟକ । ଭାରତରେ ଶିଳ୍ପ ଦ୍ରବ୍ୟର ଉତ୍ପାଦନଲାଗି ଉପାଦାନର ଅଭାବ ନାହିଁ—ବାଷ୍ପୀୟ ଶକ୍ତିର ଉତ୍ପାଦନପାଇଁ କୋଇଲା, ବୈଦ୍ୟୁତିକ ଶକ୍ତିପାଇଁ ଜଳସ୍ରୋତ ଏବଂ ଲୌହ, ସୀସା, ସ୍ୱର୍ଣ୍ଣ, ରୌପ୍ୟ, ତାମ୍ର, ଅଭ୍ର, ବକ୍ସାଇଟ୍ ପ୍ରଭୃତି ଖଣିଜ ସମ୍ପଦ ପ୍ରଚୁର ପରିମାଣରେ ଅଛି । ତେଣୁ ଭାରତରେ ଯନ୍ତ୍ର ସାହାଯ୍ୟରେ ଶିଳ୍ପଦ୍ରବ୍ୟ ଉତ୍ପାଦନ କରିବା ନିମନ୍ତେ କ୍ଷେତ୍ର ପ୍ରଶସ୍ତ । ଅବଶ୍ୟ ଆଧୁନିକ ଭାରତୀୟ ଶିଳ୍ପ

ପୃଥିବୀରେ ଶୀର୍ଷ ସ୍ଥାନ ଅଧିକାର କରିପାରି ନାହିଁ; କିନ୍ତୁ ଯେତିକି ଅଗ୍ରଗତି କରିଛି, ତାହା ଅତ୍ୟନ୍ତ ଗୌରବର ବିଷୟ । ଶତ ଶତ ଭାରତୀୟ ଯୁବକ ବିଦେଶରେ ଶିଳ୍ପଶିକ୍ଷା ଲାଭ କରି ଆମ ଦେଶର କାରଖାନାମାନଙ୍କରେ କାର୍ଯ୍ୟ କରୁଅଛନ୍ତି । ଭାରତର ଖଣିଜ ଦ୍ରବ୍ୟମାନଙ୍କ ସଦ୍‌ବ୍ୟବହାର ଲାଗି ନୂତନ ନୂତନ କାରଖାନା ପ୍ରତିଷ୍ଠିତ ହେଉଅଛି ।

ଭାରତୀୟ ଲୌହଶିଳ୍ପ ଅତି ପ୍ରାଚୀନ । ଇତିହାସ ଲିଖିତ ହେବାର ବହୁପୂର୍ବରୁ ଭାରତୀୟମାନେ ଲୌହଶିଳ୍ପରେ ସୁନିପୁଣ ଥିଲେ । ଦିଲ୍ଲୀର କୁତବମିନାର ନିକଟସ୍ଥ ସ୍ତମ୍ଭ ଓ କୋଣାର୍କର ବିଶାଳ କଡ଼ି ପ୍ରାଚୀନ ଲୌହଶିଳ୍ପର ପରିଚୟ ଦିଏ । ଆଧୁନିକ ଯୁଗରେ ବିହାରର ଜାମସେଦପୁରରେ ଯେଉଁ ଟାଟା ଲୌହ-କାରଖାନା ସ୍ଥାପିତ ହୋଇଅଛି, ତାହା ସମଗ୍ର ଏସିଆରେ ବୃହତ୍ତମ । ଏହି କାରଖାନାରେ ଅତି କୃଷିକାର୍ଯ୍ୟ-ଉପଯୋଗୀ କୋଡ଼ି କୋଦାଳଠାରୁ ଆରମ୍ଭ କରି ଜାହାଜନିର୍ମାଣ ନିମିତ୍ତ ଚକ୍ର ଓ ରେଲ ଇଞ୍ଜିନର ବିଭିନ୍ନ ଅଂଶ ପର୍ଯ୍ୟନ୍ତ ନିର୍ମାଣ କରାଯାଉଅଛି । କଲିକତା ନିକଟରେ ହୁଗୁଲି ନଦୀଉପରେ ଯେଉଁ ଲୌହନିର୍ମିତ ପୋଲ ଅଛି, ତାହା ପୃଥିବୀମଧ୍ୟରେ ତୃତୀୟ ସ୍ଥାନ ଅଧିକାର କରିଅଛି । ଏହାର ସମସ୍ତ ଅଂଶ ଏହି ଟାଟା କମ୍ପାନୀଦ୍ୱାରା ପ୍ରସ୍ତୁତ ଲୌହରେ ନିର୍ମିତ ।

ରାସାୟନିକ ଦ୍ରବ୍ୟ ପ୍ରସ୍ତୁତ କରିବାରେ ଭାରତର ଖ୍ୟାତି ବହୁକାଳରୁ ରହିଅଛି । ନାଗାର୍ଜ୍ଜୁନ ଭାରତୀୟ ରସାୟନ ବିଦ୍ୟାର ଜନ୍ମଦାତା । ବହୁ ପ୍ରାଚୀନ ଯୁଗରୁ ଏ ଦେଶର ମନୀଷୀମାନେ ଗନ୍ଧକ, ନିଶାଦଳ, ଟାଙ୍ଗଣା ପ୍ରଭୃତି ଦ୍ରବ୍ୟର ବ୍ୟବହାର ଜାଣିଥିଲେ । ଆଧୁନିକ ବିଜ୍ଞାନ ରାସାୟନିକ ଦ୍ରବ୍ୟକୁ

ନାନାପ୍ରକାରେ ପ୍ରୟୋଗ କରିବାକୁ ଶିକ୍ଷା ଦେଉଅଛୁ । ଭୂମିର ଉର୍ବରଶକ୍ତି ବୃଦ୍ଧି କରିବାପାଇଁ ରାସାୟନିକ ଦ୍ରବ୍ୟର ବ୍ୟବହାର କରାଯାଏ । କୃତ୍ରିମ ସାର ଉତ୍ପାଦନ କରିବାପାଇଁ ଭାରତରେ ଅଳ୍ପ ଦିନ ହେଲା ଉଦ୍ୟମ ହୋଇଅଛି । ବିହାରର ସିନ୍ଦ୍ରିଠାରେ ଯେଉଁ କାରଖାନା ସ୍ଥାପିତ ହୋଇଅଛି, ସେଥିରୁ ଉତ୍ପନ୍ନ ସାର ଦିନେ ସମଗ୍ର ଭାରତର ଅଭାବ ଦୂର କରିବ ବୋଲି ଆଶା କରାଯାଏ ।

ଆମ୍ଭେମାନେ ଯେଉଁ ଆଲୁମିନିୟମ୍ ବାସନ ବ୍ୟବହାର କରୁଁ, ତାହା ବକ୍‌ସାଇଟ୍ ନାମକ ଧାତୁରୁ ନିର୍ମିତ ହୁଏ । ଭାରତରେ ପ୍ରଚୁର ପରିମାଣରେ ବକ୍‌ସାଇଟ୍ ଅଛି । ପୂର୍ବେ ବକ୍‌ସାଇଟ୍‌ରୁ ଆଲୁମିନିୟମ୍ ବାହାର କରିବାପାଇଁ କୌଣସି କାରଖାନା ଭାରତରେ ନ ଥିଲା । ଭାରତରୁ ବକ୍‌ସାଇଟ୍ ବିଦେଶକୁ ରପ୍ତାନି କରାଯାଉଥିଲା । ତାହା ପୁଣି ଭିନ୍ନ ଆକାରରେ ଅସି ଏ ଦେଶରେ ବିକ୍ରି କରାଯାଉଥିଲା । ଏବେ ବଙ୍ଗଳା ଓ ଦକ୍ଷିଣ ଭାରତରେ ଆଲୁମିନିୟମର କାରଖାନାମାନ ପ୍ରତିଷ୍ଠିତ ହୋଇଅଛି ।

ଯନ୍ତ୍ରଶିଳ୍ପ ପ୍ରଭାବରେ ଭାରତରୁ ହସ୍ତନିର୍ମିତ ବସ୍ତ୍ର ଲୋପ ପାଇ ଅସିଥିଲା । ସ୍ୱଦେଶୀ ଆନ୍ଦୋଳନ ଫଳରେ ଲୋକମାନଙ୍କର ଦୃଷ୍ଟି କେତେକ ପରିମାଣରେ ପୁଣି ଗୃହଶିଳ୍ପ ଆଡ଼କୁ ଫେରିଅଛି । ତଥାପି ଯନ୍ତ୍ର ସାହାଯ୍ୟରେ ବସ୍ତ୍ର ଉତ୍ପାଦନ କରିବା ବିଷୟରେ ଭାରତ ପଶ୍ଚାତ୍‌ପଦ ହୋଇ ନାହିଁ । ବମ୍ବେ, କଲିକତା, ନାଗପୁର ପ୍ରଭୃତି ସହରରେ ଶତ ଶତ ଲୁଗାକଳ କାର୍ଯ୍ୟ କରି ଭାରତ-ବାସୀଙ୍କର ବସ୍ତ୍ରସଙ୍କଟ ଦୂର କରୁଅଛି ।

ଅନ୍ୟାନ୍ୟ ଉନ୍ନତ ଦେଶ ସଙ୍ଗେ ସମକକ୍ଷ ଓ ସ୍ୱାବଲମ୍ବୀ ହେବାପାଇଁ ଭାରତ ଯନ୍ତ୍ରଶିଳ୍ପର ଉନ୍ନତି ଦିଗରେ ଯତ୍ନ କରୁଅଛି ।

ସ୍ୱାବଲମ୍ବନଶୀଳତା ଜାତୀୟ ପ୍ରଗତିର ପ୍ରଧାନ ଲକ୍ଷଣ । ଭାରତକୁ ଏବେ ସୁଦ୍ଧା କେତେକ ସୂକ୍ଷ୍ମଯନ୍ତ୍ରପାତି ବିଷୟରେ ବିଦେଶ ଉପରେ ନିର୍ଭର କରିବାକୁ ପଡ଼ୁଅଛି; କିନ୍ତୁ ବସ୍ତ୍ର, କାଗଜ, ଚିନି ଓ ଲୌହ-ଦ୍ରବ୍ୟ ପ୍ରଭୃତିର ଉତ୍ପାଦନ ନିମନ୍ତେ ଭାରତରେ ବହୁସଂଖ୍ୟକ କାରଖାନା ସ୍ଥାପିତ ହେଲଣି ଏବଂ ଆହୁରି ଅନେକ ହେଉଅଛି । ଅଧୁନା ଭାରତରେ ୪୮୪ ଟି ବସ୍ତ୍ରକଳ, ୧୧୧ଟି ଝୋଟକଳ, ୧୭୬ଟି ଚିନିକଳ, ୧୬ ଟି କାଗଜକଳ ଏବଂ **୩୬** ଟି ଲୌହ-



[ କାଗଜକଳରେ କାଗଜମଣ୍ଡ ତିଆରି ]

କାରଖାନା ପରିଚାଳିତ ହେଉଅଛି । ସାଇକେଲ, ମୋଟରକାର, ଏପରିକି ଉଡ଼ାଜାହାଜ ନିର୍ମାଣ ନିମନ୍ତେ କାରଖାନା ସ୍ଥାପିତ ହେଲଣି । ତେଣୁ ଆଶା କରାଯାଏ, ଯନ୍ତ୍ରଶିଳ୍ପର ଅଭିବୃଦ୍ଧି ଫଳରେ ଭାରତ ଅଦୂର ଭବିଷ୍ୟତରେ କେବଳ ଯେ ଆତ୍ମନିର୍ଭରଶୀଳ

ହେବ ତାହା ନୁହେଁ, ତାହାର ରପ୍ତାନି ବାଣିଜ୍ୟ ମଧ୍ୟ ଯଥେଷ୍ଟ ପରିମାଣରେ ବୃଦ୍ଧି ଲାଭ କରିବ ।

ଯନ୍ତ୍ରଶିଳ୍ପର ଉନ୍ନତି ସଙ୍ଗେ ସଙ୍ଗେ କୁଟୀରଶିଳ୍ପର ଲୋପ ପାଇଯାଇ ନାହିଁ । ଢାକାର ସୂକ୍ଷ୍ମ ବସ୍ତ୍ର, ସମ୍ବଲପୁରର ପାଟଲୁଗା, ମୁର୍ଶିଦାବାଦର ହାତୀଦାନ୍ତ କାମ, କଟକର ଶିଙ୍ଗ ଓ ତାରକସି କାମ, କାଶ୍ମୀରର କାଠକାମ ପ୍ରଭୃତି ଯେକୌଣସି ଦେଶର ଶିଳ୍ପୀ ପକ୍ଷରେ ଗୌରବର ବିଷୟ ।



[ ଅସିକାର ଚିନି କାରଖାନା ]

ସ୍ୱାଧୀନତାଲାଭ ପରେ ପରେ ସମଗ୍ର ଭାରତରେ ବିଶେଷ ଅର୍ଥନୈତିକ ଜାଗରଣ ଦେଖା ଯାଇଅଛି । ଦେଶର ବିବିଧ ଖନିଜ ସମ୍ପଦକୁ ବ୍ୟବହାରରେ ଲଗାଇବା ନିମନ୍ତେ ଚେଷ୍ଟା

ଚାଲିଅଛି । ଦେଶର ନାନା ସ୍ଥାନରେ କଳକାରଖାନା ସ୍ଥାପିତ ହେଉଅଛି ଏବଂ ଯନ୍ତ୍ରଶିଳ୍ପର ପ୍ରତିଷ୍ଠା ଓ ଅଭିବୃଦ୍ଧି ସଙ୍ଗେ ସଙ୍ଗେ କୁଟୀରଶିଳ୍ପ ଯେପରି ଅଧୋଗତି ଲାଭ ନ କରେ, ସେଥିପାଇଁ ମଧ୍ୟ ବ୍ୟବସ୍ଥା କରାଯାଉଅଛି । ଏହା ଫଳରେ ଦିନେ ଭାରତ ତାର ପ୍ରାଚୀନ ଶିଳ୍ପଗୌରବ ଫେରାଇ ଆଣିବ ବୋଲି ଆଶା କରିବାର ଯଥେଷ୍ଟ କାରଣ ଅଛି ।

## ପ୍ରଶ୍ନ

୧ । ଅତି ପ୍ରାଚୀନ କାଳରୁ ଭାରତୀୟ ଶିଳ୍ପର ଖ୍ୟାତି ଥିବା ବିଷୟରେ କି କି ପ୍ରମାଣ ମିଳେ ?

୨ । ଭାରତରେ ଶିଳ୍ପର ଉନ୍ନତିପାଇଁ କଅଣ କରାଯାଇଅଛି ଓ ପୁଣି କଅଣ କରାଯାଉଅଛି ?

୩ । କୁଟୀରଶିଳ୍ପ ଓ ଯନ୍ତ୍ରଶିଳ୍ପମଧ୍ୟରୁ ଦେଶ ପକ୍ଷରେ କେଉଁଟି ଅଧିକ ଆବଶ୍ୟକ ଓ କାହିଁକି ?

୪ । ନିମ୍ନଲିଖିତ ଶବ୍ଦମାନଙ୍କର ବିପରୀତାର୍ଥବୋଧକ ଶବ୍ଦ ଲେଖ ଓ ପ୍ରତ୍ୟେକକୁ ବାକ୍ୟରେ ବ୍ୟବହାର କର—
ପ୍ରାଚୀନ, ସମ୍ପଦ, ବୈଷୟିକ, ବୃହତ୍ତମ, ଉନ୍ନତି, ସୂକ୍ଷ୍ମ ।

୫ । ନିମ୍ନଲିଖିତ ପଦମାନଙ୍କୁ ବାକ୍ୟରେ ବ୍ୟବହାର କର—
ଆତ୍ମନିର୍ଭରଶୀଳ, ଧର୍ମସ୍ପର୍ଶ, ଶିଳ୍ପ-ପରାକାଷ୍ଠା, ରାସାୟନିକ, ଅଧୋଗତି ।

---

# ସ୍ୱର୍ଣ୍ଣାଦ୍ରିରେ ଚିନ୍ତା

ପ୍ରାଚୀନ କାଳରେ ଏକାମ୍ର ବା ସ୍ୱର୍ଣ୍ଣାଦ୍ରି କହିଲେ କେବଳ ଆଧୁନିକ ଭୁବନେଶ୍ୱର ସହରଟିକୁ ବୁଝାଉ ନ ଥିଲା । ଏହାର ଚତୁଷ୍ପାର୍ଶ୍ୱବର୍ତ୍ତୀ ଅନ୍ତତଃ ତିରିଶ ବର୍ଗମାଇଲ ବିସ୍ତୃତ ସମସ୍ତ ଅଞ୍ଚଳଟି ଏହି କ୍ଷେତ୍ରର ଅନ୍ତର୍ଗତ ଥିଲା । ଏ ସମସ୍ତ ରହସ୍ୟପୂର୍ଣ୍ଣ ସ୍ଥାନ ବୁଲି ଦେଖିବା ପରେ ମୋର ଯେଉଁ ଅନୁଭୂତି ଜନ୍ମିଥିଲା, ତାହାହିଁ ନିମ୍ନରେ ପ୍ରକାଶ କରୁଅଛି ।

ଏହି ସମଗ୍ର ଅଞ୍ଚଳଟିକୁ ଗୋଟିଏ ସ୍ମୃତି-ତୀର୍ଥ ବୋଲିଯାଇ ପାରେ । କାଳବକ୍ଷରେ ସୀମାତୀତ ବର୍ଷର ଅଗଣିତ ନରନାରୀ ଏହି ପବିତ୍ର ଭୂମିରେ ଅବତୀର୍ଣ୍ଣ ହୋଇ ପୁଣି ଚାଲିଯାଇଅଛନ୍ତି; କିନ୍ତୁ ଏହିଠାରେହିଁ ଅଢ଼େଇ ହଜାର ବର୍ଷ ଧରି ସେମାନଙ୍କର ସ୍ମୃତିଚିହ୍ନ ରହି ଯାଇଅଛି । ପ୍ରକୃତି ଏହାକୁ ମନୋହର କରି ଗଢ଼ିଥିଲା ଏବଂ ଗୋଟାଏ ବିଶାଳ ସଭ୍ୟତାର କେନ୍ଦ୍ରସ୍ଥଳୀ ହେବାରେ ଏହାକୁ ସାହାଯ୍ୟ ମଧ୍ୟ କରିଥିଲା । ପ୍ରକୃତି ପୂର୍ବପରି ରହିଅଛି; କିନ୍ତୁ ମନୁଷ୍ୟର କୃତି ଓ ପ୍ରକୃତି ପରିବର୍ତ୍ତିତ ହୋଇ ଯାଇଅଛି । ପୂର୍ବପରି ଆଜି ମଧ୍ୟ ଏହାର ନିକଟବର୍ତ୍ତୀ ଅନୁଚ୍ଚ ପର୍ବତଶ୍ରେଣୀ ଅସୀମ ରହସ୍ୟ ହୃଦୟରେ ଧାରଣ କରି ଅବସ୍ଥିତ । ପୂର୍ବପରି ଆଜି ମଧ୍ୟ ଗନ୍ଧବତୀର ଜଳବେଣୀ ଏହାର ନିତମ୍ବରେ କାଞ୍ଚୀଦାମ ପରି ପ୍ରବାହିତ; ପୂର୍ବପରି ସ୍ୱର୍ଗବାପୀକୂଳରୁ ହଂସାଳି ଉଡ଼ି ଆସନ୍ତି, ବିନ୍ଦୁସରୋବରରେ ସନ୍ଧ୍ୟାଗମରେ 'ସିନ୍ଦୂରଲହରୀ' ଖେଳଯାଏ ଓ 'ରଥାଙ୍ଗମିଥୁନ' ଦ୍ୱୀପଦଣ୍ଡୀର ଚତୁଷ୍ପାର୍ଶ୍ୱରେ କ୍ରୀଡ଼ା କରନ୍ତି । ନଗରଟି ପୂର୍ବ ପରି 'କୁଞ୍ଜ-ବନ-ବେଷ୍ଟିତ' ହୋଇ ରହିଅଛି । ଏହାର ଉପକଣ୍ଠରେ 'ନିର୍ମଳ-ନିର୍ଝର' ଏବେ ମଧ୍ୟ

ବହି ଚାଲିଛି; କିନ୍ତୁ ଏହାର ପ୍ରାଣ-ପ୍ରବାହରେ ହଠାତ୍ ଗୋଟାଏ ପ୍ରକାଣ୍ଡ ବ୍ୟାଘାତ ପହଞ୍ଚି ଏହାର ଅତୀତ ଓ ବର୍ତ୍ତମାନକୁ ଯେପରି ଦ୍ୱିଧା ବିଭକ୍ତ କରି ପକାଇଅଛି । ଅତୀତ ମୃତ ହୋଇଲେହେଁ ତାହା



[ ଭୁବନେଶ୍ୱର ମନ୍ଦିର ]

ପ୍ରାଣ-ପ୍ରାଚୁର୍ଯ୍ୟର ପ୍ରମାଣ ଦେଉଅଛି ଏବଂ 'ବର୍ତ୍ତମାନ ଜୀବନ୍ତ ହେଲେହେଁ ଜୀବନ୍ମୃତ ବୋଧ ହେଉଅଛି ।

ଦକ୍ଷିଣରେ ଦୂର ଚକ୍ରବାଳରେ ଯେଉଁ ରହସ୍ୟମୟ ପାହାଡ଼ଟି ଦୃଷ୍ଟିଗୋଚର ହୁଏ, ତାହାହିଁ ଧଉଳି ଏବଂ ଏହା ନଗରୀର ଅଦ୍ଧ-ଇତିହାସର ପ୍ରଥମପର୍ବ ଉଦ୍‌ଘାଟନ କରିଥାଏ । ପ୍ରନସ୍ୱୁଙ୍କର କଳିଙ୍ଗ-ଯୁଦ୍ଧରେ ଏକ ଲକ୍ଷ ଲୋକ ନିହତ, ଦେଢ଼ ଲକ୍ଷ ବନ୍ଦୀ ଏବଂ

ତଦଧିକ ଲୋକ ରୋଗଯନ୍ତ୍ରଣା ଓ ଅନାହାରରେ ପତିତ ହେବା ପରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ମଧ୍ୟଭାଗରେ ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହୋଇ ଭାରତରେ ଯେଉଁ ଶାନ୍ତିବାର୍ତ୍ତା ପ୍ରଚାର କରିଥିଲେ, ତାହା ଏହି ଧଉଳିର ପ୍ରସ୍ତରଗାତ୍ରରେ ଖୋଦିତ ରହିଅଛି । କିନ୍ତୁ ଅଶୋକ ଭାରତରେ ଅନ୍ୟତ୍ର ଏହି ବାର୍ତ୍ତାରେ କଳିଙ୍ଗ ଯୁଦ୍ଧର ଭୟାବହ ପରିଣତି ବର୍ଣ୍ଣନା କରିଥିଲେହେଁ, ଏଠାରେ ସେହି ହୃଦୟବିଦାରକ କାହାଣୀ ପ୍ରକାଶ କରିବାକୁ ସାହସୀ ହୋଇପାରି ନାହାନ୍ତି । ବୋଧହୁଏ ତାଙ୍କର ଆଶଙ୍କା ଜନ୍ମିଥିଲା ଯେ, କଳିଙ୍ଗରେ ଏହି ଯୁଦ୍ଧର ପୁନଃସ୍ମୃତି ପ୍ରଚାର କଲେ ତାହାର ଜନତା ପୁଣି ସାମ୍ରାଜ୍ୟର ଶାନ୍ତିଭଙ୍ଗ କରିବାକୁ ପଶ୍ଚାତ୍‌ପଦ ହେବେ ନାହିଁ । ଏଣୁ ଧଉଳିରେ ସେ ଯେଉଁ ବାର୍ତ୍ତା ଲିପିବଦ୍ଧ କରି ଯାଇଅଛନ୍ତି, ତାହା କଳିଙ୍ଗ-ବିଜେତା ଚଣ୍ଡାଶୋକଙ୍କ ବାର୍ତ୍ତା ନୁହେଁ; ତାହା ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ରାଜା ଅଶୋକଙ୍କର ଶାନ୍ତି ଓ ସଦ୍ଭାବର ବାର୍ତ୍ତା ।

ଅଶୋକଙ୍କର ଏହି ବାର୍ତ୍ତାକୁ କାର୍ଯ୍ୟକାରୀ କରିବାର ଦାୟିତ୍ୱ ତୋଷାଳୀ ନଗରର କୁମାରାମାତ୍ୟ ଓ ଧର୍ମମହାମାତ୍ରଙ୍କ ଉପରେ ଶିଳାଲେଖଦ୍ୱାରା ନ୍ୟସ୍ତ କରାଯାଇଅଛି ଏବଂ ତାହା ଯେପରି ବାରମ୍ବାର ପଠିତ ହୁଏ, ସେଥିପାଇଁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଅଛି । ଏଣୁ ମନେ ହୁଏ ଯେ, ବର୍ତ୍ତମାନର ଭଗ୍ନ ଜୀର୍ଣ୍ଣ ଶିଶୁପାଳ ଗଡ଼ହିଁ ଏହି ପ୍ରାଚୀନ ତୋଷାଳୀ । ଏହାର ଉପକଣ୍ଠରେ ଅଶୋକସ୍ତମ୍ଭ ବିଦ୍ୟମାନ ଥିଲା; କିନ୍ତୁ ଏବେ ତାହା ଭାସ୍କରେଶ୍ୱର ମନ୍ଦିରର ନଅ ଫୁଟ ଉଚ୍ଚତା ଓ ଚାରି ଫୁଟ ପରିଧିବିଶିଷ୍ଟ ପ୍ରକାଣ୍ଡ ଶିବଲିଙ୍ଗରେ ପରିଣତ ହୋଇଅଛି । ଶିବ-ବୌଦ୍ଧ-ବିବାଦର ନିଦର୍ଶନ ବର୍ତ୍ତମାନ ଯୁଦ୍ଧା ଏହି ଶିବଲିଙ୍ଗରେ ବିଦ୍ୟମାନ । ଏହାର ଅନତିଦୂରରେ

ଅନେକଗୁଡ଼ିଏ ପ୍ରସ୍ତରଖୋଦିତ ଗୁମ୍ଫା ଅଛି । ଏଗୁଡ଼ିକରେ ବୌଦ୍ଧ ସନ୍ନ୍ୟାସୀମାନେ ବାସ କରୁଥିଲେ ।

ଶିଶୁପାଳ ଗଡ଼ଠାରୁ ଧଉଳି ଓ ଧଉଳିରୁ ଖଣ୍ଡଗିରି ପର୍ଯ୍ୟନ୍ତ ସମଗ୍ର ଅଞ୍ଚଳ ଭ୍ରମଣ କରୁଥିବା ସମୟରେ ସ୍ଥାନେ ସ୍ଥାନେ



[ ଶିଶୁପାଳ ଗଡ଼ ]

ଗୋଲକାର ମୃତ୍ତିକା ସ୍ତୂପ ଦେଖିବାକୁ ପାଇଲି । ଏଗୁଡ଼ିକ ପ୍ରାଚୀନ ବୌଦ୍ଧସ୍ତୂପମାନଙ୍କର ଅବଶେଷ ମାତ୍ର । କେତେକ ସ୍ଥଳରେ ଅର୍ଦ୍ଧ-ପ୍ରୋଥିତ ନାଗ ଓ ଯକ୍ଷମୂର୍ତ୍ତି ଦେଖିବାକୁ ମିଳେ । ଏଗୁଡ଼ିକ ନାଗ ଓ ଯକ୍ଷ-ଉପାସକମାନଙ୍କର ଉପାସ୍ୟ ଦେବତା ଥିଲେ । ବୈଦିକ ଧର୍ମ ପ୍ରାଚୀନ ଭାରତର ଏକମାତ୍ର ଧର୍ମ ନୁହେଁ । ବହୁ ଧର୍ମର ସମନ୍ୱୟରେ ହିନ୍ଦୁଧର୍ମ ବିକଶିତ ଓ ପରିପୁଷ୍ଟ ହୋଇ-ଅଛି । ରଣପୁରର ମଣିନାଗ ଅଥବା ମୈନାକ ବା ମଣିନାଗ ଦେବୀ

ନାମରେ ପୂଜିତ ହୁଅନ୍ତି । ବାଣପୁରରେ ମଧ୍ୟ କେତେକ ନାଗମୂର୍ତ୍ତି ମିଳିଅଛି ।

ଅଳ୍ପ ଦିନ ପୂର୍ବେ ଧଉଳି ପାହାଡ଼ ନିକଟରେ ଯେଉଁ ଖନନ କାର୍ଯ୍ୟ ଚାଲିଥିଲା, ସେଥିରୁ ନାଗମୂର୍ତ୍ତି ମିଳିଅଛି । ନାଗ-ଉପାସନା ଧ୍ୱଂସ କରି ବ୍ରାହ୍ମଣମାନେ ଶାସ୍ତ୍ରପୁରାଣରେ ପ୍ରକାଶ କଲେ ଯେ, ସେମାନଙ୍କର ଦେବତା କୃଷ୍ଣ-ବାସୁଦେବ ସପ୍ତଫଣା-ବିଶିଷ୍ଟ କାଳୀୟ ନାଗକୁ ଦଳନ କରିଥିଲେ । କିନ୍ତୁ ଏହାଦ୍ୱାରା ନାଗ-ଉପାସନା ସମ୍ପୂର୍ଣ୍ଣରୂପେ ଲୋପ ପାଇଗଲା ନାହିଁ । ଜନସାଧାରଣଙ୍କର ନାଗୋପାସନାକୁ ସେମାନେ ଭିନ୍ନ ରୂପରେ ବ୍ରାହ୍ମଣ୍ୟ ଧର୍ମରେ ସ୍ଥାନ ଦେବାକୁ ବାଧ୍ୟ ହେଲେ । ପୁରାଣ-ମାନଙ୍କରେ କୃଷ୍ଣଙ୍କର ଜ୍ୟେଷ୍ଠ ଭ୍ରାତା ବଳରାମଙ୍କ ମସ୍ତକରେ ସପ୍ତଫଣା, ବିଷ୍ଣୁଙ୍କର ଅନନ୍ତଶୟନ, ଶିବଙ୍କର ସର୍ପ-ଭୂଷଣ ପ୍ରଭୃତି ଯେଉଁ ଉଲ୍ଲେଖ ଦେଖାଯାଏ, ତାହା ପ୍ରାଚୀନ ନାଗୋପାସନାର ନିଦର୍ଶନ ମାତ୍ର । ପରିଶେଷରେ ବ୍ରାହ୍ମଣମାନେ ମନ୍ଦିରମାନଙ୍କରେ ନାଗମୂର୍ତ୍ତିକୁ ଉପଦେବତା ଭାବରେ ସ୍ଥାନ ଦେଇ ନାଗୋପାସକ-ମାନଙ୍କୁ ହିନ୍ଦୁଦେବଦେବୀଙ୍କର ଉପାସକରେ ପରିଣତ କଲେ ।

ଉଦୟଗିରିରେ ପହଞ୍ଚିଲାକ୍ଷଣି ଅତୀତର ଆଉ ଗୋଟିଏ ଯବନିକା ଉନ୍ମୋଚିତ ହୋଇଗଲା । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ କଳିଙ୍ଗ-ସମ୍ରାଟ୍ ଖାରବେଳ ଉଦୟଗିରିର ହାତୀଗୁମ୍ଫାରେ ତାଙ୍କର ଦିଗ୍‌ବିଜୟ ଗାଥା ଲେଖି ଯାଇଅଛନ୍ତି । ଧଉଳିଗିରିରେ ରହିଛି କଳିଙ୍ଗବିଜୟୀ ମଗଧସମ୍ରାଟଙ୍କର ଶାନ୍ତିବାର୍ତ୍ତା ଏବଂ ଉଦୟଗିରିରେ ରହିଛି ମଗଧବିଜୟୀ କଳିଙ୍ଗସମ୍ରାଟଙ୍କର ବିଜୟଗାଥା । ଏଣୁ

ପ୍ରାୟ ଏକ ଶତାବ୍ଦୀମଧ୍ୟରେ କଳିଙ୍ଗ ଦେଶ ତାର ବିପର୍ଯ୍ୟୟକୁ ଅଭ୍ୟୁଦୟରେ ପରିଣତ କରିଥିବାର ସୂଚନା ଏହିଠାରୁହିଁ ମିଳିଥାଏ । ଉଦୟଗିରିରେ ଓ ଖଣ୍ଡଗିରିରେ ଅନେକଗୁଡ଼ିଏ ଜୈନ ଗୁମ୍ଫା ଅଛି । ଏଗୁଡ଼ିକ ବିଚିତ୍ର କାରୁକାର୍ଯ୍ୟରେ ଶମନ୍ବିତ । କେଉଁଠାରେ ଗିରିଗହ୍ୱରରୁ କରିଯୂଥର ବହିର୍ଗମନ ଦେଖି ଭୀରୁ ଲଳନାମାନଙ୍କର ପଳାୟନ, କେଉଁଠାରେ ଅବା ଉଦୟନ-ବାସବଦତ୍ତାଙ୍କର ପ୍ରେମଗାଥା ପ୍ରସ୍ତରଗାତ୍ରରେ ରୂପାୟିତ ହୋଇ-ଅଛି । ଏହି ବିଚିତ୍ର ଚିତ୍ରାବଳୀମଧ୍ୟରେ ପୁଣି ରହିଛି ଜୈନ ତୀର୍ଥଙ୍କରମାନଙ୍କର ବିଗ୍ରହ ଓ କେତେକ ଜୈନ ସଙ୍କେତ ।

ମନ୍ଦିରମାଳିନୀ ଏକାମ୍ରନଗରୀ ବହୁ ଶତାବ୍ଦୀ ଧରି ଏହି ଗିରି-ଉପତ୍ୟକା ମଧ୍ୟରେ ଋଦ୍ଧି ବୃଦ୍ଧି ଲାଭ କରିଥିଲା । ବୟୋବୃଦ୍ଧ ଧଉଳାଗିରି ଓ ଖଣ୍ଡଗିରି ମସ୍ତକ ଉତ୍ତୋଳନ କରି ଏହାକୁ ଆଶିଷ ଦେଉଥିବା ପରି ଦେଖାଯାନ୍ତି । ଏହାର ଯେକୌଣସି ଦିଗକୁ ଦୃଷ୍ଟି ନିକ୍ଷେପ କଲେ କେବଳ ମନ୍ଦିରମାଳା ଦେଖିବାକୁ ମିଳେ । ଏମାନଙ୍କ ମଧ୍ୟରୁ କେହି ଉଚ୍ଚ, କେହି ଖର୍ବ, କେହି ସ୍ଥୂଳକାୟ, କେହି ସୂକ୍ଷ୍ମକାୟ, କେହି ଜୀର୍ଣ୍ଣ, କେହି ଭଗ୍ନ, କେହି ଶୀର୍ଣ୍ଣ, କେହି କୁବ୍ଜ, କେହି କଳାମଣ୍ଡିତ, କେହି କଳାବର୍ଜିତ, କେହି ଅର୍ଦ୍ଧପ୍ରୋଥିତ ଓ କେହି ଲତା-ଗୁଳ୍ମ-ଗ୍ରଥିତ ହୋଇ ଉଦାସୀନ ଭାବରେ ଉତ୍କଳର ଭାଗ୍ୟବିପର୍ଯ୍ୟୟ ନିରୀକ୍ଷଣ କରୁଅଛନ୍ତି । କାହାର କାହାର ଦ୍ୱାରଦେଶ ଲତାଗୁଳ୍ମରେ ଆଚ୍ଛାଦିତ ଓ ଅଭ୍ୟନ୍ତର ଚଟକ ପ୍ରଭୃତି ପକ୍ଷୀମାନଙ୍କର ବାସସ୍ଥାନରେ ପରିଣତ ହୋଇଅଛି । କୌଣସି କୌଣସି ମନ୍ଦିର-ରାଣୀ ସର୍ବାଙ୍ଗରେ ଅଳଂକୃତା । ସେ ଗୁଳ୍ମଲତାରେ

ଅବଗୁଣ୍ଠିତା ହୋଇ ରୂପକଥାର ରାଜକନ୍ୟା ମୌନାବତୀ ପରି ଦୁର୍ଜ୍ଜୟ ଅଭିମାନରେ ସତେ ଯେପରି ନିର୍ଜ୍ଜନତାକୁ ବରଣ କରିଅଛି । ଏମାନଙ୍କୁ ଆମର ପୂର୍ବପୁରୁଷମାନେ ଯୁଗ ଯୁଗ ଧରି ଗଢ଼ିଥିଲେ । ଆଧୁନିକ ମନୁଷ୍ୟ ଯେତେଦୂର ପାରୁଛି ଏମାନଙ୍କୁ ଭାଙ୍ଗିଛି; ଏମାନଙ୍କର ଅସ୍ଥିକଙ୍କାଳରେ ନିଜର ସୌଧ ଗଢ଼ିଛି; ଏମାନଙ୍କର ଅନବଦ୍ୟ ମୂର୍ତ୍ତିସବୁ ବିକ୍ରୟ କରି ଧନ ଉପାର୍ଜ୍ଜନ କରିଛି । ପରିଶେଷରେ ଏମାନଙ୍କ ନିକଟରେ, ଏପରିକି ଏମାନଙ୍କ ଉପରେ ମଳମୂତ୍ର ମଧ୍ୟ ତ୍ୟାଗ କରିଛି । ବହୁ ମନ୍ଦିର ପାର୍ଶ୍ୱରେ ଆଧୁନିକ ସୌଧ ପ୍ରାୟ ଲାଗିରହି ଅଧମ-ସଭ୍ୟତାର ହାସ୍ୟ ପ୍ରକାଶ କରୁଅଛି ।

ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀଠାରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରତ୍ୟେକ ଶତାବ୍ଦୀର ପ୍ରତିନିଧି ଏହି ମନ୍ଦିରମାନଙ୍କ ମଧ୍ୟରେ ବିଦ୍ୟମାନ । ଏହାପୂର୍ବର ଅତି ପ୍ରାଚୀନ ମନ୍ଦିରମାନ ବର୍ତ୍ତମାନ ସମାଧିପ୍ରାପ୍ତ ହୋଇଅଛନ୍ତି । ଗନ୍ଧବତୀର ଧାରେ ଧାରେ ବିସ୍ତୀର୍ଣ୍ଣ ଶସ୍ୟକ୍ଷେତ୍ରମାନଙ୍କରେ ସ୍ଥାନେ ସ୍ଥାନେ ଭୂଶାୟୀମାନ ମୂର୍ତ୍ତିକାସ୍ତୂପ-ସମୂହ ଏମାନଙ୍କ ସମାଧିର ସୂଚନା ଦେଉଅଛନ୍ତି । ବହୁ ଶତ ମନ୍ଦିରମଧ୍ୟରୁ ଯେଉଁ କେତେକର ଧ୍ୱଂସାବଶେଷ ମାତ୍ର ଅଛି, ସେଗୁଡ଼ିକ ମଧ୍ୟ ପୃଥିବୀରେ ଅତୁଳନୀୟ । ଏ ଦେଶର ନଟରାଜ କେତେବେଳେ ଧ୍ୱଂସର ପ୍ରଳୟଙ୍କର ବେଶରେ ନାଚ ନ ଥିଲେ; ଲଳିତ ନୃତ୍ୟରେ ରତ ହୋଇ ସେ ସୃଷ୍ଟିର ଆନନ୍ଦରେ ମତ୍ତ ରହିଥିଲେ । ବହୁ ବୀର୍ଯ୍ୟ, ବହୁ ସାଧନା, ବହୁ ତ୍ୟାଗ, ବହୁ ଯୁଗର ପରମ୍ପରାହିଁ ରୁକ୍ଷ ପାଷାଣବକ୍ଷରେ ପାରିଜାତ ସୃଷ୍ଟି କରିଯାଇଛି । ଏହି ମୂକ ମନ୍ଦିରମାନଙ୍କର ଦେବଦେବୀମୂର୍ତ୍ତି, ଲତା-ପୁଷ୍ପ-ପଲ୍ଲବ,

ପଶୁ-ପକ୍ଷୀ, ନାଗ-ନାଗିଣୀ, କିନ୍ନର କିନ୍ନରୀ, ବିଦ୍ୟାଧର-ବିଦ୍ୟାଧରୀ, ଯକ୍ଷ-ଯକ୍ଷିଣୀ, ପ୍ରେମିକ-ପ୍ରେମିକାର ଛନ୍ଦୋମୟୀ ସୃଷ୍ଟି ଯେଉଁ ପ୍ରାଣ-ପ୍ରବାହରୁ ବାହାରିଥିଲା, ତାହା କଅଣ ଏକାବେଳକେ ଶୁଷ୍କ ହୋଇଗଲା ? କେହି କହୁ ନାହିଁ ଯେ ମନ୍ଦିର-ନିର୍ମାଣ ଯୁଗ ଚିରକାଳ ଚାଲିଥାଅନ୍ତା । ପୁରାତନକୁ ନୂତନ ରୂପ ଦେବା କାଳର ଚିରନ୍ତନ ରୀତି; କିନ୍ତୁ ମନୁଷ୍ୟଶକ୍ତିର ମଧ୍ୟ ବିଚିତ୍ର ଗତି । ତାହା ଗୋଟିଏ ଦିଗରେ ବାଧା ପାଇଲେ ଅନ୍ୟ ଦିଗରେ ପ୍ରବଳ ବେଗରେ ଧାଏଁ । ମନୁଷ୍ୟର ଏହି ଶକ୍ତି ଅଳକାଳି କୋଠାରେ ଦେଖିବାକୁ ମିଳେ ନାହିଁ । ତାହାହିଁ ବିସ୍ମୟର ବିଷୟ ।

ଭୁବନେଶ୍ୱର ଅସିଲେ ଅନ୍ୟମାନେ କଅଣ ଭାବନ୍ତି ବା କରନ୍ତି, ତାହା କଳ୍ପନା କରିବାକୁ ଲାଗିଲି । ଯେଉଁମାନେ ଧର୍ମ ଅର୍ଜନ କରିବାକୁ ଅସନ୍ତି, ସେମାନେ ପୂଜା ଉପାସନା କରି ଚାଲିଯାନ୍ତି; ଦର୍ଶକମାନେ ଦେଖିବା ପରେ ସେମାନଙ୍କ କର୍ତ୍ତବ୍ୟ ଶେଷ ହେଲା ବୋଲି ମନେ କରନ୍ତି । ପ୍ରତ୍ନତାତ୍ତ୍ୱିକମାନେ ପ୍ରତ୍ନଚର୍ଚ୍ଚା-ପାଇଁ ଅସନ୍ତି । କେହି ଭାବେ ମନ୍ଦିରଗୁଡ଼ାକ ଭୂମିସାତ୍ ହୋଇଗଲେ ସେ ଠାରେ ବିଳାସପ୍ରାସାଦ ତୋଳନ୍ତା, ଭୋଗୀ ଭାବେ ଏମାନଙ୍କର ଅନବଦ୍ୟ ମୂର୍ତ୍ତିଗୁଡ଼ିକ ନେଇ ସେ ଠାରେ ଶୟନକକ୍ଷ ମଣ୍ଡନ କରନ୍ତା । ଅତୀତର ଅନ୍ଧ ସ୍ତାବକ ଶୁଷ୍କ ପ୍ରଶଂସା ଢାଳିପକାଇ ହାୟ ହାୟ କରେ ଏବଂ ଅତୀତର ମୂର୍ଖ ନିନ୍ଦୁକ କହେ, ଏମାନଙ୍କୁ ଭାଙ୍ଗିଦିଅ ବା ଫିଙ୍ଗିଦିଅ । କିନ୍ତୁ ଅତୀତ ଏ ସମସ୍ତଙ୍କର ଅନ୍ତରାଳରେ ଥାଇ ଇଙ୍ଗିତରେ ଜଣାଇଦିଏ—'ମୁଁ ତୁମ୍ଭମାନଙ୍କର ନିନ୍ଦା ବା ପ୍ରଶଂସାର ବାହାରେ । ତୁମ୍ଭେ ମୋତେ ନିନ୍ଦା କର ବା ପ୍ରଶଂସା କର, ଜାଣ ବା ନ ଜାଣ,' ମୁଁ ତୁମ୍ଭର ପଛେ ପଛେ ଲାଗି ରହିଅଛି । ତୁମ୍ଭେ ଆଗକୁ ଯାଅ ବା ପଛକୁ ଯାଅ

ତମ୍ଭା ଅବସ୍ଥିରେ ପଡ଼ି ରହିଥାଏ ଯାହା କରନା କାହିଁକ, ତାହା କେବଳ ମୋ ସାହାଯ୍ୟରେ ଜାଣିପାରିବ ।"

## ପ୍ରଶ୍ନ

୧ । ଭୁବନେଶ୍ୱରର ପ୍ରାଚୀନ କୀର୍ତ୍ତିସମୂହର ଗୋଟିଏ ବିବରଣ ଲେଖ ।

୨ । ଖଣ୍ଡଗିରି ଓ ଉଦୟଗିରି ପାହାଡ଼ ଦୁଇଟିରୁ ଉତ୍କଳର କି ଐତିହାସିକ ଉପାଦାନ ମିଳେ ?

୩ । ନିମ୍ନଲିଖିତ ବାକ୍ୟଗୁଡ଼ିକର ଭାବକୁ ପ୍ରସାରିତ କରି ଗୋଟିଏ ଗୋଟିଏ ଅନୁଚ୍ଛେଦ ଲେଖ—

(କ) (ଭୁବନେଶ୍ୱରରେ) ଅତୀତ ମୃତ ହେଲେହେଁ ସେ ପ୍ରାଣ-ପ୍ରାଚୁର୍ଯ୍ୟର ପ୍ରମାଣ ଦେଉଅଛି ଏବଂ ବର୍ତ୍ତମାନ ଜୀବନ୍ତ ହେଲେହେଁ ସେ ଜୀବନ୍ମୃତ ।

(ଖ) ଏ ଦେଶର ନଷ୍ଟରାଜ କେତେବେଳେ ଧ୍ୱଂସର ପ୍ରଳୟଙ୍କର ବେଶରେ ନାଚ ନ ଥିଲ; ଲଳିତ ନୃତ୍ୟରେ ରତ ହୋଇ ସେ ସୃଷ୍ଟିର ଆନନ୍ଦରେ ମତ୍ତ ରହିଥିଲ ।

(ଗ) ଅତୀତର ଅନ୍ଧ ସ୍ତାବକ ଶୁଷ୍କ ପ୍ରଶଂସା ଢାଳିପକାଇ ହାୟ ହାୟ କରେ ।

(ଘ) ପୁରାତନକୁ ନୂତନ ରୂପ ଦେବା କାଳର ଚିରନ୍ତନ ରୀତି; କିନ୍ତୁ ମନୁଷ୍ୟଶକ୍ତିର ମଧ୍ୟ ବିଚାର୍ଯ୍ୟ ଗତି ।

୪ । ନିମ୍ନଲିଖିତ ପଦମାନଙ୍କର ଅର୍ଥ ଲେଖି ପ୍ରତ୍ୟେକକୁ ବାକ୍ୟରେ ବ୍ୟବହାର କର—

ଅବତୀର୍ଣ୍ଣ, ଜୀବନ୍ମୃତ, ହୃଦୟ-ବିଦାରକ, ନିଦର୍ଶନ, ବହିର୍ଗମନ, ଭାଗ୍ୟବିପର୍ଯ୍ୟୟ, ଅବସ୍ଥି ।

## ଶବରୀର ଶ୍ରୀରାମ-ସେବା

ଗହନ ବନ କୋଳେ   ଲତାବିତାନ ତଳେ
ବିଜୁଳି-ବେଗେ ଖେଳେ   ବାରତା—
ତେଜି ସାକେତଧାମ   କାନନଗୃହୀ ରାମ
ନିଖିଳ ଭୁବନର   କରତା ।

ନିଷାଦ ଜନ ଯେତେ   ଭାଳିଲେ, "ହେବ ସତେ
ଏଡ଼ିକି ସୁକପାଳ   ଆମର,
ଛଳେ ନୋହେ ପରତେ   ଆସିବେ ବୋଲି ଏଥେ
ସେ ମହାବାହୁ ରାଜ-   କୁମର ।

ହୀନଜନମା ଆମେ   ପଡ଼ିଛେଁ ବନଭୂମେ,
ଅତହିଁ ଘୃର ଆମ   ଜୀବନ,
କହ ଭଲା କେସନ   ପାତକୀ ଏ ନୟନ
ଦେଖିବ ସେ ମୂରତି   ପାବନ ?"

ଶୁଚି-ଅଗୁରୁ-ଶୀଳା   'ଶବରୀ' ଏକ ଥିଲା,
ହେଲା ସେ ବିଚଳିତ   ପରାଣେ;
ନ ଶୁଣି ସେ କାହାର   ହତାଶାମୟ ଗୀର
ରାମ-ଚରଣେ ମତି   ହରାଏ ।

ତାପସୀ ନାରୀବର   ଜାଣିଲା, ରଘୁବୀର
ଦୟାର ଅବତାର   ମଣ୍ଡିରେ;
ହୀନ ନିଷାଦ ଭଳି   ନ ଦେବେ ମତେ ଠେଲି,
ସକଳେ ସମ ଯେଣୁ   ତହିଁରେ

ଶର ଭରସା ତାର, କୃପାର ଅକୂପାର
ଅସିବେ ତା କୁଞ୍ଜଅ- ଦୁଆରେ,
ପୂଜିବ ବୋଲି କରେ ରୁଚିର ସେ ପସୂରେ
ଜୀବନ ନାଚେ ସୁଖ- କୁଅରେ ।

ବସୌର ବ୍ୟଥାଭାର ହରଷେ ବାରବାର
ଅବେଗେ ଥରଥର ବୁକୁ ତା,
ପୁଲକଭରା ତନୁ, ଅଶାପ୍ଲୁତ-ନୟନୁଁ
ଝରଇ ଲୋତକର ମୁକୁତା ।

ଚାହିଁ ତା ଦନ ଯାଏ, ରଜନୀ ଅସି ପାହେ,
ଲଭଇ ବନ-ଶିରୁଁ ଜୋଛନା,
ମାସକୁ ମାସ ବଢେ, ମାତର କଦାଚତେ
ମାନସେ ନାହିଁ ତାର ଶୋଚନା ।

ଫୁଟଇ ଫୁଲ ହସି, ମଉଳି ହୁଏ ବାସି,
କଅଁଳ ଝରିପଡ଼େ ପତର,
ଯବେଣ ହେଲେ କପାଳେ ଗାଳି ଦେଇନି ତାଲେ,
ଅଶାରେ ମାଡ଼ ନାହିଁ ପଥର ।

ନିଦାଘ ଗଲେ ଛାଡ଼ି ବରଷା ଅସେ ମାଡ଼ି,
ବରଷା ପରେ ପୁଣି ଶରତ,
ହିମ, ଶିଶିର ଶେଷେ ଋତୁପତି-ପରଶେ
ସୁଷମ ହୁଏ ସାରା ମରତ ।

ଏସବେ ଅସି ସବୁ ମଳାଏ ପୁଣି ଭରୁଁ,
ମାତର ତାର ଏକା ଭୁବନ—

ଦେଖିବ ମଧୁହାସେ ପତିତପାବନେ ସେ,
କୁଟୀର ହେବ ତାର ଶୋଭନ ।
ଲତା ପାଦପ ଛୁଇଁ "ଏକାଳେ ଗଲ୍ପ କହ୍
ସତେ କ ସମୀରଣ ଗୋପନେ—
"ସାଜ ଲୋ ପୂଜାଡାଲ ଏବେ ଯେ ବେଳ ହେଲା,
ସାଜ ଲୋ ହରଷିତ ଲପନେ ।

ଅସିବେ ଏବେ ତୋର କୁଟୀରେ ରଘୁବୀର,
ଅସିବେ ଭବଭୟ- ହରଣ,
ସଫଳ ହେବ ନାସ୍ତି- ଜନମ ତୋ ଶବରୀ !
ସେବୀ ସେ କୃପାମୟ- ଚରଣ ।"

ଚକତେ ଚମକି ସେ ଅନାଏ ଚଉଦିଶେ,
ଗରବେ ଗଦ୍ଗଦ ଲଗେ ହୃଦୟ,
ଥମକି ପଡ଼େ ତଳ, ବଜୁଳ ଯାଏ ଖେଳ,
ପଲକେ ମହାଭାବ ଉଦୟ ।

ଅଣିଲା ସଜ ଫଳ, ମଧୁର ଝର-ଜଳ,
ରଖିଲା ସଯତନେ ସଜାଇ,
ତୋଳି ସୁବାସ ଫୁଲ ରଚିଲା ବନମାଳ,
ପଥରେ ଦେଲା ଘର ଭିଜାଇ ।

ବିବିଧ କୁସୁମରେ ଅତି ସୁଷମରେ
ଅସିବା ପଥ ଦେଲା ଲଗାଇ,
ନଳିନୀ-ଦଳପରେ ପରମ ପ୍ରମୋଦରେ
ସେବତୀ-ଶେଯ ଦେଲା ବିଛାଇ ।

କ୍ଷଣକେ ସବୁ ସାର ଅବେଗେ ସୁକୁମାରୀ
ରହିଲ ଗୃହିଁ ବନ- ଅୟନେ,
ଦେଖେ କୁରଙ୍ଗୀ ମୁଖେ ତରୁଣୀତୃଣ-ମୁଖେ
ଚଳ ଚପଳ ମୀନ ନୟନେ ।
ସହସା ଉଠେ ହସି ଅଳେକେ ବନ ଭାସି,
କୁଞ୍ଜଅ ହେଲ କେଡ଼େ ଉଜଳ,
ଯାଏ ଶବରୀ ଧାଇଁ ଏକଧିଅନେ ଗୃହିଁ,
ଲୋଚନ ବେନି ତାର ସଜଳ ।
ପ୍ରଭୁ ଅତସୀ-ଶ୍ୟାମ ଗତ-ସୁକୃତ-ଧାମ
ଉଭା ତା କୁଞ୍ଜଅର ଦୁଆରେ.
ମୋହିତ ତନୁ ମନ, ଅଣ୍ଡି ପଲକହୀନ,
ପୁଲକ ନାଚେ ତାର ହିଅରେ ।
ମହିମା-ମହାମେରୁ କାମ-କଳପତରୁ
ହେଉ ନବ-ନୀରଦ- ମୂରତ,
ସେ ପଦ-କୋକନଦେ ଭକତ-ଗଦ୍‌ଗଦେ
ଢାଳିଲ ଜୀବନର ଅରତ ।

## ପ୍ରଶ୍ନ

୧ । କବିତାଟିର ମର୍ମ ଏକ ଅନୁଚ୍ଛେଦରେ ପ୍ରକାଶ କର ।

୨ । (କ) "ଫୁଟଇ ଫୁଲ ହସି·····ମାଉ ନାହିଁ ପଥର ।"
(ଖ) "ମହିମା-ମହାମେରୁ····· ଜୀବନର ଅରତ ।"
ଏ ପଦ ଦୁଇଟିର ଭାବାର୍ଥ ସରଳ ଭାଷାରେ ବୁଝାଇ ଲେଖ ।

୩ । ଲତା-ବିତାନ, ଶୁଚି-ଅଗୁରୁ-ଶୀଳା, ଭବଭୟ-ହରଣ, କୃପାମୟ-ଚରଣ, ଅତସୀ-ଶ୍ୟାମ, ଗତ-ମୁକ୍ତି-ଧାମ, ଶ୍ୟାମ-କଳମତରୁ, ପଦ-କୋକନଦ—ଏଗୁଡ଼ିକର ସରଳ ଅର୍ଥ ଓ ସମାସବାକ୍ୟ ଲେଖ ।

୪ । ଗହନ, ପଞ୍ଜର, ବିସୋରି, ପୁଲକ, ପଲକ, ଶୋଚନା, ପରଶ, ଚକିତ, ବିଭଳିତ, ଅୟୂନ—ଏ ଶବ୍ଦଗୁଡ଼ିକୁ ଗୋଟିଏ ଗୋଟିଏ ବାକ୍ୟରେ ପ୍ରୟୋଗ କର ।

---

## ବିଜ୍ଞାନ ଓ ବାର୍ତ୍ତା

ଭାଷା ସାହାଯ୍ୟରେ ମାନବ ନିଜର ମନୋଭାବ ପ୍ରକାଶ କରେ । ଲିଖନପଦ୍ଧତି ଉଦ୍ଭାବିତ ହେବା ପୂର୍ବରୁ ସେ କେବଳ ନିଜ ମୁଖର ଭାଷା ସାହାଯ୍ୟରେ ନିକଟବର୍ତ୍ତୀ ସହଚର ସହିତ ଭାବବିନିମୟ କରିପାରୁଥିଲା । ସ୍ଥାନାନ୍ତରକୁ ସମ୍ବାଦ ପ୍ରେରଣ କରିବା ପାଇଁ ସେ ଦୂତମୁଖର ଆଶ୍ରୟ ନେଉଥିଲା । ସେତେବେଳର ଦଳପତି ତାହାର ବିକ୍ଷିପ୍ତ ଦଳକୁ ଏକତ୍ର କରିବା ନିମନ୍ତେ ପର୍ବତଶିଖରରେ ବାଦ୍ୟଧ୍ୱନି କରିବା ବା ଅଗ୍ନି ପ୍ରଜ୍ୱଳିତ କରିବା ଭଳି ସଙ୍କେତସବୁ ବ୍ୟବହାର କରୁଥିଲା ।

କ୍ରମେ ଚିତ୍ର ଓ ପରେ ଅକ୍ଷର ସାହାଯ୍ୟରେ ଲିଖନପଦ୍ଧତିର ସୃଷ୍ଟି ହେଲା । ଏହାଦ୍ୱାରା ମାନବ ନିଜର ଚିନ୍ତାଧାରାକୁ ତାଳ-ପତ୍ର ବା ଭୂର୍ଜପତ୍ରରେ ରୂପ ଦେଇ ଭବିଷ୍ୟତ୍ ବଂଶଧରମାନଙ୍କପାଇଁ ତାହା ସଞ୍ଚୟ କରିପାରିବା ସଙ୍ଗେ ସଙ୍ଗେ ଦୂରବର୍ତ୍ତୀ ବନ୍ଧୁଙ୍କୁ ମଧ୍ୟ ଜଣାଇ ଦେଇ ପାରିଲା । ଏ ଅବସ୍ଥାରେ ସେ ଦୂତର ମୁଖ ଅପେକ୍ଷା ନିଜର ଲିଖନଶକ୍ତି ଉପରେ ଅଧିକ ନିର୍ଭର କଲା । ଏହା ପ୍ରାଗୈତିହାସିକ ଓ ଐତିହାସିକ ଯୁଗର କଥା ।

ଐତିହାସିକ ଯୁଗରେ ସମ୍ରାଟ୍ ଚନ୍ଦ୍ରଗୁପ୍ତ ପ୍ରଜାସାଧାରଣଙ୍କର ପତ୍ର ଓ ସମ୍ବାଦର ଆଦାନପ୍ରଦାନ ପାଇଁ କେତେକ ଅଶ୍ୱାରୋହୀଙ୍କୁ ନିଯୁକ୍ତ କରିଥିଲେ ବୋଲି ଜଣାଯାଏ । କିନ୍ତୁ ଭାରତରେ ବିଧିବଦ୍ଧ ଡାକ ବିଭାଗର ପ୍ରଚଳନ ଅନ୍ୟୂନ ପ୍ରାୟ ଦୁଇ ହଜାର ବର୍ଷ ପରେ ସମ୍ଭବପର ହୋଇଥିଲା । ତତ୍କାଳୀନ ଭାରତର ଅସମ୍ବଦ୍ଧ ଓ ଅଶାନ୍ତ ରାଜନୈତିକ ପରିସ୍ଥିତି ଏଥିପାଇଁ ବହୁପରିମାଣରେ ଦାୟୀ ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଭାରତର ବଡ଼ଲାଟ ଲର୍ଡ଼ ଡେଲହାଉସୀ ଆଧୁନିକ ଡାକ, ତାର ଓ ରେଳ ବିଭାଗର ପ୍ରତିଷ୍ଠା କଲେ । ସେତେବେଳେ ପଥପାର୍ଶ୍ୱର ତାରସ୍ତମ୍ଭ ଜନମନରେ ଏପରି ବିସ୍ମୟୋତ୍ପାଦନ କରିଥିଲା ଯେ, ଏହାକୁ ସିପାହୀ ବିଦ୍ରୋହର ଏକ କାରଣ ରୂପେ ଐତିହାସିକମାନେ ନିର୍ଣ୍ଣୟ କରନ୍ତି ।

ବର୍ତ୍ତମାନ ଯୁଗରେ ଡାକ, ତାର, ଟେଲିଫୋନ ଓ ରେଡ଼ିଓର ବ୍ୟବହାର ଏତେ ସାଧାରଣ ହୋଇପଡ଼ିଛି ଯେ, ତାହା ବର୍ଣ୍ଣନା କରି କାହାରି ମନରେ କୌତୂହଳ ଜାତ କରିବାକୁ ଚେଷ୍ଟା କରିବା ନିଜ ଅଧିମ-ଜ୍ଞାନର ପରିଚୟ ଦେବା ସଙ୍ଗେ ସମାନ ହେବ । ବିଜ୍ଞାନର ଗତି ବର୍ତ୍ତମାନ ଅଚିନ୍ତ୍ୟପୂର୍ବ । ହିରୋସି-ସୀମାରେ ପରମାଣୁ ବୋମାର ବ୍ୟବହାର ଯେଉଁ ଦିନ ସମଗ୍ର ଜଗତକୁ ସ୍ତମ୍ଭୀଭୂତ କରିଦେଲା, ତାର ମାତ୍ର କେତେ ବର୍ଷ ପରେ ହାଇଡ୍ରୋଜେନ୍ ବୋମାର



[ ଟେଲିଫୋନ ଯନ୍ତ୍ର ]

ଉଦ୍ଭାବନ ପୂର୍ବ ଘଟନାକୁ ଅତ୍ୟନ୍ତ ଲଘୁ କରି ପକାଇଅଛି । ତେଣୁ ଅଳ୍ପ ଭିତରେ ଟେଲିଫୋନର ରିସିଭର ହାତରେଧରି ଇଂଲଣ୍ଡର ବଣିକ ସହିତ ବାକ୍ୟାଳାପ କରିବା, ରେଡ଼ିଓ ଯନ୍ତ୍ରରେ ହଂକଂର ସମ୍ବାଦ ସଂଗ୍ରହ କରିବା କିମ୍ବା ଶତ ଶତ ମାଇଲ ଦୂରରେ ବସି ନ୍ୟୁୟର୍କ ରଙ୍ଗମଞ୍ଚର ଅଭିନୟ ଟେଲିଭିଜନରେ ଦେଖିପାରିବା ଆଉ ଅଦ୍ଭୁତ ବ୍ୟାପାର ହୋଇ ରହି ନାହିଁ ।



[ ରେଡ଼ିଓ ]

ଆମ କଟକ ସହରରେ ନ ହେଲେ ମଧ୍ୟ ପଡ଼ୋଶୀ କଲିକତା ବଜାରରେ ବଡ଼ ବଡ଼ ସଂଖ୍ୟାର ହରଣ-ଗୁଣନ ଓ ଯୋଗ-ବିଯୋଗ ପାଇଁ ମସ୍ତିଷ୍କର ତୁଳନା ଅପେକ୍ଷା ଯନ୍ତ୍ରର କାର୍ଯ୍ୟକାରିତା ଉପରେ ଅଧିକ ଆସ୍ଥା ସ୍ଥାପନ କରାଯାଉଅଛି । ମାଞ୍ଚେଷ୍ଟର ପ୍ରଭୃତି ବିଶ୍ୱବିଦ୍ୟାଳୟମାନଙ୍କରେ ଯନ୍ତ୍ର ସାହାଯ୍ୟରେ କେତୋଟି ମୁହୂର୍ତ୍ତରେ ଏପରି ଜଟିଳ ଗାଣିତିକ ସମସ୍ୟାମାନଙ୍କର ସମାଧାନ କରାଯାଇ ପାରୁଅଛି, ଯାହାର ଉତ୍ତରରେ ଉପନୀତ ହେବାକୁ ବାଗ୍ମୀ ଗଣିତଶାସ୍ତ୍ର-ବିଶାରଦମାନଙ୍କୁ ମଧ୍ୟ ସେତିକି ଘଣ୍ଟା ଆବଶ୍ୟକ ହେବ । ବର୍ତ୍ତମାନ ଶୁଣାଯାଏ, ଆମେରିକାର କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଦୁଇ ଜଣ ଅଧ୍ୟାପକ ଏପରି ଏକ ଯନ୍ତ୍ର

ଉଦ୍ଭାବନ କରିଅଛନ୍ତି ଯେ, ତଦ୍ଦ୍ୱାରା ଗୋଟିଏ ଭାଷାର ଗ୍ରନ୍ଥକୁ ଅନ୍ୟ ଭାଷାରେ ଅକ୍ଲେଶରେ ଅନୁବାଦ କରାଯାଇପାରିବ ।

କିନ୍ତୁ ଏତକରେ ବିଜ୍ଞାନର ବିଜୟଯାତ୍ରା ଶେଷ ହୋଇ ନାହିଁ । କେବେ ଓ କେଉଁଠାରେ ତାହାର ଶେଷ ହେବ, ତାହା ମଧ୍ୟ କୁହାଯାଇ ନ ପାରେ । ଆଜି ମାନବ ତାହାର ସସୀମ ଜ୍ଞାନ ଓ ଶକ୍ତିବଳରେ ଅସୀମ ଆକାଶର ଗ୍ରହ-ଜଗତରେ ପରିଭ୍ରମଣ କରିବାକୁ ଚେଷ୍ଟିତ । ସେ ସେଥିରେ କୃତକାର୍ଯ୍ୟ ହେଲେ ପୁଣି ଯେଉଁ ଅସୀମ ଜ୍ଞାନ ଓ ଶକ୍ତି ଆୟତ୍ତ କରିବ, ତଦ୍ଦ୍ୱାରା ଆଉ ଯେ କି ମହାବିସ୍ମୟକର ବ୍ୟାପାର ସଂସାଧନ କରି ନ ପାରିବ, ତାହା କଳ୍ପନା କରିବାର ଅବସର ବର୍ତ୍ତମାନ ଆସି ନାହିଁ ।

ସକଳ ବିଭାଗରେ ବିଜ୍ଞାନ କିପରି ପ୍ରଭାବ ବିସ୍ତାର କରି ପାରିଛି, ସମ୍ବାଦପ୍ରେରଣ କ୍ଷେତ୍ରରେ ତାହା ଅଧିକ ସୁସ୍ପଷ୍ଟ; କାରଣ ମାନବ ମଙ୍ଗଳ ବା ଶୁକ୍ର ଗ୍ରହରେ ଉପନୀତ ହେବା ପୂର୍ବରୁ ସେଠାକୁ ସମ୍ବାଦ ପ୍ରେରଣ କରି ସେଠାର ସମ୍ଭାବ୍ୟ ଜୀବଜଗତ୍ ସହିତ ସମ୍ବନ୍ଧ ପ୍ରତିଷ୍ଠା କରିବା ନିମିତ୍ତ ଯତ୍ନବାନ୍ ।

ଆଗେ ସମ୍ବାଦପତ୍ରରେ ପ୍ରକାଶ ପାଇଁ ଉଦ୍ଦିଷ୍ଟ ସମ୍ବାଦ ପୃଥିବୀର ବିଭିନ୍ନ କେନ୍ଦ୍ରରୁ ସଂଗୃହୀତ ହୋଇ କ୍ଲିପ୍ତ ଭାଷାରେ ନିର୍ଦ୍ଦିଷ୍ଟ ସଙ୍କେତ ସାହାଯ୍ୟରେ ଟେଲିଗ୍ରାଫ୍ ଅଫିସରେ ପହଞ୍ଚୁଥିଲା ଏବଂ ଟେଲିଗ୍ରାଫ୍ କର୍ମଚାରୀଙ୍କଦ୍ୱାରା ଲିଖିତ ହୋଇ ସମ୍ବାଦପତ୍ର ଅଫିସକୁ ପ୍ରେରିତ ହେଉଥିଲା । ଏ ସମ୍ବାଦ ସେଠାରେ ପୁଣି ସାଧାରଣ ଭାଷାରେ ଲିଖିତ ଓ ମୁଦ୍ରିତ ହେବା ପାଇଁ ସମୟ ଆବଶ୍ୟକ ହେଉଥିଲା । ଏହି ସମୟକୁ ଯଥାସମ୍ଭବ ନ୍ୟୂନ କରିବା ନିମନ୍ତେ ବର୍ତ୍ତମାନ ପ୍ରତ୍ୟେକ ଦୈନିକ ସମ୍ବାଦପତ୍ର କାର୍ଯ୍ୟାଳୟରେ ଗୋଟିଏ ଯନ୍ତ୍ର ବ୍ୟବହୃତ ହେଉଅଛି । ଏହାର

ନାମ ଟେଲିପ୍ରିଣ୍ଟର । ଏହାଦ୍ୱାରା କେନ୍ଦ୍ର ସମ୍ବାଦ ସରବରାହ ଅନୁଷ୍ଠାନ ଏକ ସମୟରେ ବହୁସଂଖ୍ୟାକ ସମ୍ବାଦପତ୍ର ଅଫିସକୁ ସମ୍ବାଦ ପଠାଇପାରୁଥାନ୍ତି । ତାହା ସଙ୍ଗେ ସଙ୍ଗେ ସମ୍ବାଦ ଉକ୍ତ ଯନ୍ତ୍ରରେ ସ୍ୱତଃ କାଗଜଉପରେ ଟାଇପ୍ ହୋଇଯାଏ । ଫଳରେ ସମ୍ବାଦପତ୍ର ପ୍ରକାଶ ଶୀଘ୍ରତର ହୋଇ ପାରିଅଛି ଏବଂ ପୂର୍ବ ଦିବସ ଅଷ୍ଟ୍ରେଲିଆ, ଆମେରିକା ବା ଚୀନରେ ଘଟିଥିବା ଘଟନା ପରଦିନ କଟକ ବଜାରରେ ପ୍ରଚାରିତ ହୋଇ ପାରୁଅଛି ।

ସମ୍ବାଦପତ୍ର କଥା ଛାଡ଼ିଦେଲେ ବ୍ୟକ୍ତିଗତ ଚିଠିପତ୍ର ଆଦାନପ୍ରଦାନରେ ମଧ୍ୟ ସେହିଭଳି ବିଚିତ୍ର ଉନ୍ନତି ସାଧିତ ହୋଇଅଛି । ବିଗତ ଯୁଦ୍ଧ ସମୟରେ ବିଳାତରୁ ଦୈନିକ ଯେତେ ପତ୍ର ବାହାରକୁ ଯାଉଥିଲା, ତାହାର ସଂଖ୍ୟା ଥିଲା ପ୍ରାୟ ତିନି ଲକ୍ଷରୁ ବେଶୀ ଓ ପ୍ରାୟ ସେତିକି ପତ୍ର ବାହାରୁ ବିଲାତକୁ ଆସୁଥିଲା । ସାଧାରଣ କାଗଜ ଓ ଲଫାଫାରେ ଏଗୁଡ଼ିକର ଓଜନ ପ୍ରାୟ ୧୫୦୦ ମହଣ ଏବଂ ଏଗୁଡ଼ିକୁ ନେବାପାଇଁ ବିମାନପୋତରେ ଯଥେଷ୍ଟ ସ୍ଥାନ ଆବଶ୍ୟକ ହେଲା । ଯୁଦ୍ଧକାଳୀନ ଅବସ୍ଥାରେ ଏତେ ଓଜନର ପତ୍ର ପ୍ରତ୍ୟହ ନେବା ଆଣିବା ଅସମ୍ଭବ ହେବାରୁ ଗୋଟିଏ ନୂତନ ଉପାୟର ଉଦ୍ଭାବନ କରାଗଲା । ଏହାର ନାମ 'ଏୟାର୍ ଗ୍ରାଫ୍' ଅର୍ଥାତ୍ ବିମାନଗାମୀ-ଫଟୋ-ପତ୍ର ।

ବିଲାତର କୌଣସି ପୋଷ୍ଟ ଅଫିସରେ ଏହି ପଦ୍ଧତିରେ ପତ୍ର ପଠାଇବାକୁ ହେଲେ ନିର୍ଦ୍ଦିଷ୍ଟ ଫର୍ମରେ ଯଥାସ୍ଥାନରେ



ଠିକଣା ଓ ବିଷୟ ଲେଖିଦେବାକୁ ହୁଏ । ଏହିଭଳି ପତ୍ରସବୁ ଲଣ୍ଡନର ଡାକଘରକୁ ଆସେ ଏବଂ ସେଠାରେ ଏକ ଯନ୍ତ୍ର ସାହାଯ୍ୟରେ ଫିଲ୍ମ ଭଳି ପ୍ରତି ଘଣ୍ଟାରେ ୧୫୦୦ ପତ୍ରର ଫଟୋ ନିଆଯାଏ ।

ଡାକଘରେ ଯେଉଁ ଫର୍ମରେ ପତ୍ର ଦିଆଯାଏ, ତାହାର ବିସ୍ତାର ୮୮ ବର୍ଗଇଞ୍ଚ ; କିନ୍ତୁ ଫଟୋ ନିଆଯିବା ପରେ ପୂର୍ବ ପୃଷ୍ଠାର ଚିତ୍ର ଭଳି ପତ୍ରଟିର ବିସ୍ତାର ମାତ୍ର ¾ ବର୍ଗଇଞ୍ଚ ହୁଏ । ଲଫାଫା ସହିତ ଏକ ଲକ୍ଷ ପତ୍ରର ଓଜନ ପ୍ରାୟ ୫୧୨ ମହଣ ପରିବର୍ତ୍ତେ ଏକ ଲକ୍ଷ ଚିଠିର ଚିତ୍ର ମାତ୍ର ୧୬ ସେର ହୋଇଥାଏ । ତେଣୁ ଯେଉଁ ତିନି ଲକ୍ଷ ପତ୍ର ଦୈନିକ ବିଲାତରୁ ବାହାରକୁ ଯିବାର କଥା, ତାହା ଏକ ମହଣ ଓଜନବିଶିଷ୍ଟ ହୋଇ ବିମାନ ଯୋଗେ



[ ଏୟାର୍‌ଗ୍ରାଫ୍‌ରେ ପତ୍ରପ୍ରେରଣ ]

ବିଦେଶକୁ ଚାଲିଯାଏ ଏବଂ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ପରେ ସେଗୁଡ଼ିକୁ ପୁଣି ଅନ୍ୟ ଏକ ଯନ୍ତ୍ରଦ୍ୱାରା ୨୨ ବର୍ଗଇଞ୍ଚ କାଗଜ

ଉପରେ ପରିବର୍ଦ୍ଧିତ କରାଯାଇ ଉଦ୍ଦିଷ୍ଟ ବ୍ୟକ୍ତିମାନଙ୍କ ନିକଟକୁ ପ୍ରେରଣ କରାଯାଏ ।

ଉପରୋକ୍ତ ଏୟାର୍‌ଗ୍ରାଫ୍ ପଦ୍ଧତି ପରେ ପୁଣି ଯେଉଁ ଅଭିନବ ପ୍ରଣାଳୀ ଉଦ୍ଭାବିତ ହେଲଣି, ତାହା ବିଜ୍ଞାନର ପ୍ରଗତି ସମ୍ବନ୍ଧରେ ଅଧିକ ଧାରଣା ଦେଇଥାଏ । ରେଡ଼ିଓ ସାହାଯ୍ୟରେ ଚିତ୍ରପ୍ରେରଣ ଆଧୁନିକ ଯୁଗର ଅନ୍ୟତମ ଅଦ୍ଭୁତ ଉଦ୍ଭାବନ ! ଏ ଯନ୍ତ୍ରକୁ ବର୍ତ୍ତମାନ ପତ୍ରପ୍ରେରଣ କାର୍ଯ୍ୟରେ ବିନିଯୋଗ କରିବାର ଚେଷ୍ଟା ହେଉଅଛି । ଏହି ଯନ୍ତ୍ର ସାହାଯ୍ୟରେ ନିର୍ଭୁଲପୂର୍ବକ ଲକ୍ଷ ଲକ୍ଷ ପତ୍ରର ପ୍ରତିଚ୍ଛବି ଘଣ୍ଟାକମଧ୍ୟରେ ବିଦେଶର ସେହିଭଳି ଯନ୍ତ୍ରରେ ଉଦ୍‌ଭାସିତ ହୋଇଯାଏ ଏବଂ ସେଠାରେ ତାହାର ଫଟୋ ନିଆଯାଇ ଉଦ୍ଦିଷ୍ଟ ବ୍ୟକ୍ତିଙ୍କ ନିକଟକୁ ପଠାଯାଇପାରେ ।

ସୁତରାଂ ପ୍ରାଗୈତିହାସିକ ଯୁଗର ଦୂତଦ୍ୱାରା ସମ୍ବାଦ-ପ୍ରେରଣ ପଦ୍ଧତି ସହିତ ଆଧୁନିକ ବୈଜ୍ଞାନିକ ପଦ୍ଧତିର ତୁଳନା କଲେ ପୁରାଣବର୍ଣ୍ଣିତ କୁରୁ ରାଜସଭାରେ ପାଞ୍ଚାଳୀଙ୍କ ବିକଳ କ୍ରନ୍ଦନ ଦ୍ୱାରକାରେ ଶ୍ରୀକୃଷ୍ଣଙ୍କ ମନରେ ପ୍ରତିଫଳିତ ହେବା କଥା ଆଜି କ୍ରମେ ବାସ୍ତବରେ ପରିଣତ ହେବାକୁ ଯାଉଛି ବୋଲି କୁହାଯାଇପାରେ ।

## ପ୍ରଶ୍ନ

୧ । ଐତିହାସିକ ଓ ପ୍ରାଗୈତିହାସିକ ଯୁଗରେ ସମ୍ବାଦ କିପରି ପ୍ରେରଣ କରାଯାଉଥିଲା ?

୨ । ତାର, ଡାକ ଓ ରେଳ ବିଭାଗର ପ୍ରତିଷ୍ଠା ସିପାହୀ ବିଦ୍ରୋହର ଏକ କାରଣରୂପେ ନିର୍ଣ୍ଣୀତ ହୁଏ କାହିଁକି ?

୩ । ଏସ୍ପାର୍‌ଗ୍ରାଫ୍ ପଦ୍ଧତି କଅଣ ? ଏହା କିପରି କାର୍ଯ୍ୟକାରୀ ହୁଏ ? ଏଥିରୁ କି ଉପକାର ମିଳେ ?

୪ । ଟେଲିଗ୍ରାଫ୍, ଟେଲିଭିଜନ୍ ଓ ପରମାଣୁ ବୋମା ସମ୍ବନ୍ଧରେ ସଂକ୍ଷିପ୍ତ ଟିପ୍ପଣୀ ଲେଖ ।

୫ । ପ୍ରାଗୈତିହାସିକ, ଅଧିମଣ୍ଡଳ, ଗାଣିତିକ ସମସ୍ୟା, ଗଣିତଶାସ୍ତ୍ର-ବିଶାରଦ, ସମ୍ବାଦ ସରବରାହ, କ୍ଲୋଜ୍ ସର୍କିଟ ପ୍ରଣାଳୀ—ଏଗୁଡ଼ିକର ସରଳ ଅର୍ଥ ଲେଖ ।

---

## ଆଗେ ନିଜକୁ ସଂଶୋଧନ କର

ପୃଥିବୀର ଶତ ଶତ ଭାଷା, ଭିନ୍ନ ଭିନ୍ନ ଧର୍ମ, ଅଦ୍ଭୁତ ବ୍ୟବହାର, ପୁଣି ଚମତ୍କାର ବିଭିନ୍ନ ବର୍ଣ୍ଣ ଓ ମୁଖମଣ୍ଡଳର ଗଠନ-ବୈଶିଷ୍ଟ୍ୟ ଦେଖିଲେ ବିଶ୍ୱାସ କରିବାକୁ କଷ୍ଟ ହୁଏ ଯେ, ଆମେ ସମଗ୍ର ମାନବଜାତି ମୂଳତଃ ଏକ । ସେ ଯାହା ହେଉ, ଇତିହାସ ଆଲୋଚନା କଲେ ଏତିକି ଅନ୍ତତଃ ଜଣାପଡ଼ୁଛି ଯେ, ପୃଥିବୀରେ ଦିନେ ଏତେ ଧର୍ମ ନ ଥିଲା, କି ଏତେ ଭାଷା ନ ଥିଲା—ଯେଉଁ ଧର୍ମ ଓ ଭାଷାହିଁ ଆଜି ମନୁଷ୍ୟ ମନୁଷ୍ୟ ଭିତରେ ସହସ୍ର ଅଲଂଘ୍ୟ ପାଚେରୀର କାମ କରୁଛନ୍ତି । ଧର୍ମ ଓ ଭାଷାଗୁଡ଼ିକ ଗଣତୀୟ କାଳଭିତରେହିଁ ଜନ୍ମ ଓ ଅଭିବୃଦ୍ଧି ପାଇଛନ୍ତି । ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ଇଂରେଜୀପରି ବିଖ୍ୟାତ ଭାଷାଗୁଡ଼ିକର ସତ୍ତା ନ ଥିଲା । ଆଧୁନିକ ଭାରତର ଭାଷାଗୁଡ଼ିକର କଥାହିଁ ସେହିପରି । ବଙ୍ଗାଳୀ, ଓଡ଼ିଆ ଓ ବିହାରୀ ଛଅ ଶହ ବର୍ଷ ତଳେ ପ୍ରାୟ ଏକ ଭାଷାରେ କଥାଭାଷା ହେଉଥିଲେ । ଧର୍ମର କଥା ବି ସେହିପରି । ମାନବୀୟ ସଭ୍ୟତା ଅନ୍ତତଃ ସାତ ହଜାର ବର୍ଷର; କିନ୍ତୁ ଖ୍ରୀଷ୍ଟ ଧର୍ମର ଜନ୍ମ

ମାତ୍ର ଊଣିଶ ଶହ ବର୍ଷ ତଳେ, ଇସଲାମ ଧର୍ମର ଜନ୍ମ ବାର ଶହ ବର୍ଷ ତଳେ ।

ଧର୍ମ ଓ ଭାଷାକୁ ଚିରନ୍ତନ ଓ ଅପରିବର୍ତ୍ତିତ ବା ଅପରିବର୍ତ୍ତନୀୟ ଘଟଣା ବୋଲି ଧରି ସମାଜରେ କନ୍ଦଳ ସୃଷ୍ଟି କରିବାକୁ ଅନେକ ବୁଦ୍ଧିମାନ୍ ଓ ବିଚାରବନ୍ତ ଲୋକ ଏବେବ ଆଉ ପସନ୍ଦ କରନ୍ତି ନାହିଁ । ବର୍ତ୍ତମାନ ପୃଥିବୀର ଚିନ୍ତାନାୟକମାନେ ଧର୍ମ, ଭାଷା ଓ ବର୍ଣ୍ଣର ସକଳ ଭିନ୍ନତାକୁ ଉପେକ୍ଷା କରି ପୁଣି ମାନବସମାଜକୁ ତାର ଆଦିମ ଏକତ୍ୱକୁ ଫେରାଇନେବାକୁ ଚାହାନ୍ତି । ସେଥିପାଇଁ ଲିଗ୍ ଅଫ୍ ନେଶନ୍‌ସ୍‌ର (League of Nations) ଜନ୍ମ ହୋଇଥିଲା ଏବଂ ଇଉ. ଏନ୍. ଓ. ଭାବରେ ତାର ଦେହାନ୍ତରପ୍ରାପ୍ତି ହୋଇଅଛି । ସେଥିପାଇଁ ମଧ୍ୟ ପୃଥିବୀରେ ଗୋଟିଏ ସାଧାରଣ ଭାଷା ପ୍ରଚଳନର ଚେଷ୍ଟା; ସେଥିପାଇଁ ଧର୍ମକୁ ରାଷ୍ଟ୍ରୀୟ ସକଳ ବିଚାରରୁ ପୃଥକ୍ କରିବା ନିମନ୍ତେ ପ୍ରଯତ୍ନ ।

ସମାଜ ଚିରନ୍ତନ; କିନ୍ତୁ ଚର୍ଚ୍ଚ ବା ଷ୍ଟେଟ୍ ଅର୍ଥାତ୍ ଧର୍ମ ବା ରାଜ୍ୟ ପରକାଳର ଘଟଣା । ଘଟଣାଚକ୍ରରୁ ସେମାନଙ୍କର ଉଦ୍ଭବ । ଆଜିକାଲି ଜଙ୍ଗଲରେ ନରନାରୀ ଆଦିମ ଅବସ୍ଥାରେ ଥିଲେହେଁ ସେମାନଙ୍କର ଏକ ବିଧିବେଷ୍ଟିତ ସମାଜ ଅଛି; କିନ୍ତୁ ଆମେ ଯେପରି ଧାରଣା କରୁଁ, ସେପରି ଧର୍ମ ବା ରାଜ୍ୟ ସେମାନଙ୍କର ନ ଥିଲା ବା ଆଜିଯାଏ ନ ଥାନ୍ତା—ଯଦି ବାହାରୁ ଏସବୁ ତାଙ୍କ ଉପରେ ଲଦି ଦିଆଯାଇ ନ ଥାନ୍ତା । ଆଜି ମାନବସମାଜକୁ ବିଭେଦ ଅତ୍ୟାଚାରରୁ ରକ୍ଷା କରିବା ପାଇଁ ଧର୍ମକୁ ସମାଜର ପୃଷ୍ଠଭାଗକୁ ଠେଲି ଦିଆଯାଉଛି ଏବଂ ରାଷ୍ଟ୍ର ଓ ସମାଜକୁ ଏକାକାର କରିଦେବାର ପ୍ରୟାସ ହେଉଛି । ବିଦ୍ୟା ଓ ଧନର ତାରତମ୍ୟ

ନେଇ ସମାଜରେ ଓ ରାଷ୍ଟ୍ରରେ ଯେଉଁ ଉଚ୍ଛାବଚ ପରମ୍ପରା ଦେଖା ଯାଉଥିଲା, ତାହା ବିଦ୍ୟାର ସାର୍ବଜନୀନ ପ୍ରଚାର ଫଳରେ ଓ ଧନସମ୍ପଦର ସମବିତରଣ ବ୍ୟବସ୍ଥା ବଳରେ କ୍ରମେ ଯେ ଉଭେଇଯିବ, ଏଥିରେ ସନ୍ଦେହ କରିବାର କାରଣ ନାହିଁ ।

ଆମେ ଯେଉଁ ଗୋଷ୍ଠୀରେ ବାସ କରୁଁ, ତାହା ସମାଜ ହେଉ ବା ରାଷ୍ଟ୍ର ହେଉ କିମ୍ବା ଉଭୟର ସମ୍ମିଳିତ ଗଠନ ହେଉ, ତହିଁରେ ବ୍ୟକ୍ତିର ଦାୟିତ୍ୱ କ୍ରମେ ବଢ଼ୁଛି—କମିବାକୁ ନାହିଁ । ପୂର୍ବେ ଆମେ ଜଣେ ରାଜା ଉପରେ ସବୁ ଭାର, ସବୁ ଦାୟିତ୍ୱ ଥୋଇଦେଇ ନିଜ ନିଜ ବ୍ୟବସାୟରେ ଲାଗି ରହିଥିଲେଁ । ରାଜା ଇଚ୍ଛା ଅନୁସାରେ ବାଛୁଥିଲେ ମନ୍ତ୍ରୀ ଓ ସେନାପତି । ଆମଠୁଁ ଖଜଣା ନେଇ ନିଜର ଜୟସ୍ତମ୍ଭ ବା ପ୍ରିୟାର ସ୍ମୃତିମନ୍ଦିର ଗଢ଼ୁଥିଲେ ଆମର ସେଥିରେ କିଛି କହିବାର ନ ଥିଲା । ଭାରତବର୍ଷ କଥା ଛାଡ଼ିଦିଅ, ଇଂଲଣ୍ଡରେ ତ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜା ଈଶ୍ୱରପ୍ରେରିତ ଓ ସର୍ବଥା ମାନନୀୟ—ଏ ଧାରଣା କମ୍ ବଳବତ୍ତର ନ ଥିଲା । ଆଜି ସେସବୁ ଆଲୋଚନା ବା ସ୍ମରଣ କରିବାର ଅର୍ଥ କିଛି ନାହିଁ । ଆଜି ଆଉ ରାଜା ନାହାନ୍ତି; କିନ୍ତୁ ରାଜ୍ୟ ଅଛି, ରାଷ୍ଟ୍ର ଅଛି, ସମାଜ ଅଛି । ଏସବୁର ସମୂହ ଦାୟିତ୍ୱ ଆଜି ଆମ ଉପରେ । ସମାଜ ବ୍ୟକ୍ତିର ସମଷ୍ଟି ମାତ୍ର; ତେଣୁ ଦାୟିତ୍ୱ ପ୍ରକୃତରେ ପ୍ରତ୍ୟେକ ବ୍ୟକ୍ତିର ।

ଆଦିମ ଯୁଗର ଦଳପତିହିଁ ପରେ ନରପତି ହେଲେ । ପ୍ରଥମ ଦଳପତିପ୍ରତି କୃତଜ୍ଞ ଭାବ ଯୋଗୁ ହେଉ ବା ବାରମ୍ବାର ନିର୍ବାଚନ କଷ୍ଟରୁ ରକ୍ଷା ପାଇବାକୁ ହେଉ, ସମାଜ ଦଳପତିର ପୁଅକୁ ଜନ୍ମର ଅଧିକାରରେ ଏକାଧାରରେ ନରପତି ଓ ଦଳପତି କଲା । ବନ୍ଧୁ

ସହସ୍ର ବର୍ଷ ଧରି ଏହି ରୀତି ଚାଲି ଆସିଲା । ଏବେ ଇଂଲଣ୍ଡ ପ୍ରଭୃତି ଅଳ୍ପ କେତୋଟି ଦେଶ ଛଡ଼ା ପୃଥିବୀର ଅନ୍ୟାନ୍ୟ ନରପତି ନାହାନ୍ତି କହିଲେ ଚଳେ । ଇଂଲଣ୍ଡରେ ରାଜା କେବଳ ପ୍ରଦର୍ଶନୀ ପାଇଁ, ରାଜ୍ୟ ଚଳାନ୍ତି ନିର୍ବାଚିତ ମନ୍ତ୍ରୀ । କିନ୍ତୁ ପରିବର୍ତ୍ତନଶୀଳ ଇଂଲଣ୍ଡୀୟ ସମାଜରେ ଅପରିବର୍ତ୍ତିତ ରାଜମୁକୁଟ ଜାତୀୟ ଇତିହାସର ପ୍ରତୀକ ରୂପେ ବ୍ରିଟିଶ ରାଜ୍ୟକୁ ଏକ କେନ୍ଦ୍ର ଯୋଗାଉଛି ଓ ଜାତିକୁ ଏକପ୍ରକାର ସଂହତି ଦାନ କରୁଛି, ଯାହା ଅନ୍ୟ ଜାତିରେ ଅସମ୍ଭବ ।

ନେତା ଦିନେ ନରପତି ହୋଇଥିଲେ । ଏବେ ନରପତି ଯାଇ ପୁଣି ନେତା ଆସିଲେ । ନେତା ନ ହେଲେ ରାଷ୍ଟ୍ରର କଥା ଛାଡ଼ିଦିଅ, ଗୋଟିଏ ଛୋଟ କୁଟୁମ୍ବ ବି ସୁରୁଖୁରୁରେ ଚାଲିପାରିବ ନାହିଁ । କାର୍ଯ୍ୟର ସୌକର୍ଯ୍ୟ ପାଇଁ ଦୁଇ ଜଣ ମାତ୍ର ଲୋକ ଥିଲେ ବି ତାଙ୍କ ଭିତରେ ଜଣେ ନେତା, ଅନ୍ୟଜଣକ ମିତ ହେବା ଉଚିତ; ନ ହେଲେ କାମ ଚାଲିପାରିବ ନାହିଁ ।

ଏଇ ନେତା ପୂର୍ବକାଳର ନରପତି ପରି ସ୍ୱର୍ଗରୁ ପ୍ରେରିତ ହେବେ ନାହିଁ ଈଶ୍ୱରଙ୍କ ଦ୍ୱାରା—ତାଙ୍କୁ ଆମେହିଁ ବାଛିବା । ସେ ଆମରି ଭିତରୁହିଁ ଜଣେ ହେବେ । ନେତା ଭଲ ବା ମନ୍ଦ ହେଲେ ସେ ଦାୟିତ୍ୱ ଆମରି । ସେଥିପାଇଁ ଆମେ ଆଉ କାହାକୁ ଦୋଷ ଦେଇପାରିବା ନାହିଁ । ଥରେ ଜଣକୁ ନେତା ବାଛି ତାକୁ ନ ମାନିବା ବା ଅସମ୍ମାନ କରିବା ମଧ୍ୟ ଏକ ରାଷ୍ଟ୍ରୀୟ ଅପରାଧ । ଶାସନ-ବିଧାନ ଅନୁସାରେ ଏବେ କୌଣସି ନେତା ତିନି ବର୍ଷ, ପାଞ୍ଚ ବର୍ଷ ବା ଅତି ବଡ଼ ହେଲେ ସାତ ବର୍ଷରୁ ଅଧିକ କାଳ ସେ ଆସନରେ ରହିପାରିବେ ନାହିଁ । ଯଦି ନେତା ଆଶାନୁରୂପ ନ ହେଲେ, ତେବେ ତିନି ବର୍ଷ, ପାଞ୍ଚ ବର୍ଷ ପରେ, ଏପରିକି ତା ପୂର୍ବରୁ ମଧ୍ୟ

ତାହାଙ୍କୁ ମଦଚ୍ୟୁତ କରିବାର ଅଧିକାର ଓ ଦାୟିତ୍ୱ ଲୋକଙ୍କ ହାତରେ ଅଛି । ପୂର୍ବେ ଏକ ବା ଏକାଧିକ ନରପତିଙ୍କର ଅତ୍ୟାଚାର ଲୋକେ ପୁରୁଷାନୁକ୍ରମେ ଭୋଗୁଥିଲେ; ତା ତୁଳନାରେ ତିନି ବର୍ଷ, ପାଞ୍ଚ ବର୍ଷ କିଛି ନୁହେଁ । ପୂର୍ବେ ଅତ୍ୟାଚାରୀ ନରପତିଙ୍କି ଦୂର କରିବାର କୌଣସି ବାଟ ନ ଥିଲା । ତାଙ୍କ ବିରୁଦ୍ଧରେ ଅସ୍ତ୍ର ଧାରଣ କରିବାର ସାହସ କାହାର ହେବ ? ସେ ଯେ ଦେବତା । କିନ୍ତୁ ଆଜି ଲୋକଙ୍କୁ ଅସ୍ତ୍ରଧାରଣ କରିବାକୁ ପଡ଼ିବ ନାହିଁ । ଭୋଟହିଁ ଜନତା-ହସ୍ତରେ ପରମ ଅସ୍ତ୍ର—ତାରି ବଳରେ ସେ ନେତାଙ୍କୁ ଥୋଇବ ଓ କାଢ଼ିବ ।

ଲୋକଙ୍କ ଦାୟିତ୍ୱ ଅପେକ୍ଷା ନେତାର ଦାୟିତ୍ୱ ପୁଣି ସହସ୍ର ଗୁଣ । ନେତା ମନ୍ଦ ହେଲେ ସାରା ରାଷ୍ଟ୍ର ବିପନ୍ନ ହେବ, ଅର୍ଥାତ୍ ସହସ୍ର ସହସ୍ର, ଲକ୍ଷ ଲକ୍ଷ ଲୋକଙ୍କର ଦୁର୍ଦ୍ଦଶା । ପ୍ରକୃତ ନେତା ସେହି, ଯାହାର ଲକ୍ଷ୍ୟ ସ୍ପଷ୍ଟ ଏବଂ ଯେ ନିଜର ଜଡ଼େକ ବାମ୍ବୁଟୀ ବକ୍ତୃତା ବା ନିର୍ଦ୍ଦେଶର ପରିଣାମ କଅଣ ହେବ, ତାହା ଆଗରୁ ଜାଣିପାରି ସେଥିପାଇଁ ପ୍ରସ୍ତୁତ ରହେ ।

ନେତା ଦୁଇ ପ୍ରକାର—ସେବକ ଓ ଶାସକ । ସେବକ-ନାୟକର ପ୍ରକୃଷ୍ଟ ଆଦର୍ଶ ଆମର ପ୍ରାଣର ବାପୁଜୀ । ଶାସକ-ନାୟକର ଆଦର୍ଶ ଭାବରେ ଅବ୍ରାହମ୍ ଲିନ୍‌କନ୍‌ଙ୍କୁ ଧରା ଯାଇପାରେ । ଏ ଦୁହିଙ୍କର ସାମ୍ୟ ଏଇଠି ଯେ, ସାମାନ୍ୟତମ ଲାଭପାଇଁ ମଧ୍ୟ ଏ ଦୁହେଁ କେବେହେଲେ ଜାତିକୁ ସେ ବାଟ ବତେଇ ନାହାନ୍ତି, ଯେଉଁଥିରେ ସତ୍ୟ, ନ୍ୟାୟ ବା ଧର୍ମର କିଞ୍ଚିତ୍ ଅବମାନନା ହେବ । ଲିନ୍‌କନ୍ ମାର୍କିନ୍ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ ଥିଲେ । କିନ୍ତୁ ସେ କ୍ରୀତଦାସଙ୍କୁ ମାନବିକ ସ୍ୱାଧୀନତା ଦେବାପାଇଁ ମତ ପ୍ରକାଶ କରନ୍ତେ ସେହି ରାଷ୍ଟ୍ର ଦକ୍ଷିଣ ଓ ଉତ୍ତର ଦୁଇ ଭାଗ

ହୋଇ ରକ୍ତାକ୍ତ ଗୃହବିବାଦରେ ଉନ୍ମତ୍ତ ହୋଇଥିଲା । ଏହି ଯୁଦ୍ଧରେ କେବଳ ଗୋଟିଏ ଆଦର୍ଶ ପାଇଁ ଭାଇ ଭାଇ, ବନ୍ଧୁ ବନ୍ଧୁ ରଣଭୂମିରେ ଗଡ଼ାଗଡ଼ି ହେବାର ରୋମାଞ୍ଚକର କାହାଣୀ ପ୍ରତ୍ୟେକ ଭାରତୀୟର ପଢ଼ିବା ଉଚିତ । ସେଇ ପାଞ୍ଚଟି ବର୍ଷ ଲିଙ୍କନ୍ ନିଜର ନେତୃତ୍ୱରେ, ନିଜ ଜାତିର ରକ୍ତକ୍ଷୟ ଦେଖି କି ମର୍ମାନ୍ତିକ ଯନ୍ତ୍ରଣା ଭିତର ଦେଇ ଯାଇଥିବେ, ତାହା କେବଳ ଅନୁମେୟ । ଉଦାର ମାନବିକ ଆଦର୍ଶ ପାଇଁ ତାଙ୍କୁ ତାହା କରିବାକୁ ହୋଇଥିଲା । ସେ ବିଜୟ ଲାଭ କଲେ । କୃଷ୍ଣ ଜାତି ଦାସତ୍ୱରୁ ମୁକ୍ତି ପାଇଲା । କିନ୍ତୁ ବିଜୟ-ନିଶୀଥରେହିଁ ମହାପ୍ରାଣ ଲିଙ୍କନ୍ ଆତତାୟୀ ହସ୍ତରେ ନିହତ ହେଲେ ।

ଏହିପରି ଶାସକ-ନାୟକଠାରୁ ମଧ୍ୟ ସେବକ-ନାୟକ ମହତ୍ତର । ଲିଙ୍କନଙ୍କଠାରୁ ବାପୁଜୀ ଉଚ୍ଚତର; କାରଣ ଲିଙ୍କନ୍ ପ୍ରେସିଡେଣ୍ଟ ହେବା ପାଇଁ ଚେଷ୍ଟା କରିଥିଲେ, କିନ୍ତୁ ବାପୁଜୀ ଯେତେ ହେଲେ କୌଣସି ପଦ-ପଦବୀ ପାଇଁ ଚେଷ୍ଟା କରି ନ ଥିଲେ । ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ଥିଲା, ଦୁଃସ୍ଥ ମାନବର ସେବା କରିବା ।


[ ଅବ୍ରାହମ୍ ଲିଙ୍କନ୍ ]

ରାଷ୍ଟ୍ର କ୍ରମେ କ୍ରମେ ସମାଜକୁ କବଳିତ କରିବାକୁ ଯାଉଛି । ଆମର ସମଗ୍ର ସାମାଜିକ ଜୀବନ ରାଷ୍ଟ୍ର ବା ରାଷ୍ଟ୍ରଶାସକର କବଳଗତ

ହେବାକୁ ଯାଉଛୁ । ବାପୁଜୀ ଏହି ବ୍ୟାପକ ଛନ୍ଦଶୀଳନଶୀଳ ଘୋର ବିରୋଧୀ ଥିଲେ । ସେ ଗୃହ୍ଣଥିଲେ ବିଶ୍ୱମାନବିକତା । ତା ସଙ୍ଗେ ସେ ମଧ୍ୟ ସ୍ୱପ୍ନ ଦେଖୁଥିଲେ, କ୍ଷୁଦ୍ର୍ତମ ଗ୍ରାମ ଓ ପରିବାର ସ୍ୱାବଲମ୍ବୀ ହେଉ । କ୍ଷୁଦ୍ର ଓ ବିରାଟର ଏଇ ମଧୁର ସମ୍ପର୍କସ୍ଥାପନହିଁ ବାପୁଜୀଙ୍କ ରାମରାଜ୍ୟର ବ୍ୟବସ୍ଥା । ପ୍ରାଚୀନ ଭାରତର ରାଜ୍ୟବ୍ୟବସ୍ଥା ଏହି ନୀତିରେ ଗଠିତ ହୋଇଥିଲା । ନିଜର ଲୁଗା, ନିଜର ଖାଦ୍ୟ, ନିଜର ଅସବାବ୍ ନିଜ ହାତରେ ସୃଷ୍ଟି କରି, ରାଷ୍ଟ୍ରର ବା ଯନ୍ତ୍ରସଭ୍ୟତାର କବଳରୁ ନିଜକୁ ରକ୍ଷା କରି କିପରି ସ୍ୱାବଲମ୍ବୀ ହୋଇଯାଇପାରେ, ବାପୁଜୀ ତାର ସବିଶେଷ ପ୍ରୟୋଜ୍ୟ କର୍ମପନ୍ଥା ଦେଇ ଯାଇଛନ୍ତି । ସେସବୁ ଆମେ ଗ୍ରହଣ ଓ ଅଭ୍ୟାସ ନ କରି ଅନ୍ୟକୁ ଦୋଷ ଦେବାରେ ବା କି ଲାଭ ?

ରାଷ୍ଟ୍ର ଶାନ୍ତି ଓ ନିରାପତ୍ତା ଉପରେ ପ୍ରତିଷ୍ଠିତ । ସମାଜ ପ୍ରତିଷ୍ଠିତ ମାତୃତ୍ୱ ଉପରେ । ମାନବିକ ସମାଜ ପ୍ରିୟା ଓ ଜନନୀ ଏହି ଦୁଇ ବିନ୍ଦୁକୁ କେନ୍ଦ୍ର କରି ଘୂରୁଅଛି ଏବଂ ସେହିମାନଙ୍କ ସମ୍ପର୍କର ପ୍ରଭାବରେ କୋଟି କୋଟି ଗୋଷ୍ଠୀ ଗଢ଼ି ଉଠୁଛି । ଆମର ତେଣୁ ଏ ବିଷୟରେ ସର୍ବଦା ଜାଗ୍ରତ ରହିବା ଉଚିତ ଯେ, ଏହି ଗୋଷ୍ଠୀ ବା ପାରିବାରିକ ଜୀବନରେ ଯେପରି ଶାନ୍ତି, ଶୃଙ୍ଖଳା ଓ ସଦ୍‌ଭାବ ଜୀବନ୍ତ ରହି ଆମକୁ ବାହାରର ଆକ୍ରମଣ ଓ ଅତ୍ୟାଚାରରୁ ରକ୍ଷା କରିପାରିବ । ସ୍ୱାମୀ-ସ୍ତ୍ରୀ, ବାପ-ପୁଅ, ଭାଇ-ଭାଇ, ଭାଇ-ଭଉଣୀର ସମ୍ପର୍କ ଯେଉଁଠି ମାଧୁର୍ଯ୍ୟମୟ, ସେଇଠିହିଁ ଧରା-ସ୍ୱର୍ଗ । ଯେଉଁ ଲୋକ ଜୀବନରେ ଉତ୍ତମ ଜନନୀ ଓ ଉତ୍ତମ ପ୍ରେୟସୀ ପାଇଛନ୍ତି, ଦାରିଦ୍ର୍ୟ ସତ୍ତ୍ୱେ ତାଙ୍କଠୁ ଅଧିକ ଭାଗ୍ୟବାନ୍ ଲୋକ ଥାଇ ନ ପାରନ୍ତି ।

ସମାଜର ବା ରାଷ୍ଟ୍ରର ବିଶୃଙ୍ଖଳା ବା ଅବାଞ୍ଛନୀୟତା ପାଇଁ ନିଜ ଛଡ଼ା ଅନ୍ୟ ସମସ୍ତଙ୍କୁ ଗାଳି ଦେବା ଆମ ସମସ୍ତଙ୍କର ବଦ୍ଧମୂଳ ଅଭ୍ୟାସ; କିନ୍ତୁ ଅନ୍ୟକୁ ଦୋଷ ଦେବା ପୂର୍ବରୁ ପ୍ରତ୍ୟେକର ଆତ୍ମପରୀକ୍ଷା କରି ଦେଖିନେବା ଉଚିତ, ଆମେ ସେହି ବିଶୃଙ୍ଖଳା ବା ଅସାମ୍ୟ ପାଇଁ କେଉଁ ପରିମାଣରେ ଦାୟୀ କି ନୁହଁ । ଏଠାରେ କନ୍‌ଫୁସିୟୁସ୍‌ଙ୍କର ଏକ ବାଣୀ ଆମ ସମସ୍ତଙ୍କର ପ୍ରଣିଧାନ ଓ ଅଭ୍ୟାସ କରିବାର କଥା—

"ଯଦି ପୃଥିବୀକୁ ସଂଶୋଧନ କରିବାକୁ ଚାହଁ, ତେବେ ଆଗେ ନିଜ ଜାତିକି ସଂଶୋଧନ କର; ନିଜ ଜାତିକି ସଂଶୋଧନ କରିବାକୁ ଯଦି ଅଭିଳାଷ କର, ତେବେ ଆଗେ ନିଜ ପରିବାରକୁ ସଂଶୋଧନ କର; ନିଜ ପରିବାରକୁ ସଂଶୋଧନ କରିବାକୁ ଯଦି ଚାହଁ, ତେବେ ଆଗେ ନିଜକୁ ସଂଶୋଧନ କର ।"

## ପ୍ରଶ୍ନ

୧ । ଧର୍ମ ଓ ଭାଷାକୁ ଚିରନ୍ତନ ଏବଂ ଅପରିବର୍ତ୍ତନୀୟ ବିଚାର କରିବାରେ ଯୁକ୍ତି କଅଣ ?

୨ । ପ୍ରାଚୀନ ଯୁଗର ରାଜା ଓ ଆଧୁନିକ ଯୁଗର ରାଷ୍ଟ୍ରନେତାଙ୍କ ମଧ୍ୟରେ କି କି ପାର୍ଥକ୍ୟ ଅଛି ?

୩ । ନେତା ନିର୍ବାଚନରେ ଲୋକସାଧାରଣଙ୍କର ଦାୟିତ୍ୱ କଅଣ ?

୪ । ନିମ୍ନଲିଖିତ ବାକ୍ୟଦ୍ୱୟର ଭାବକୁ ପଲ୍ଲବିତ କର—

(କ) ଧର୍ମ ଓ ଭାଷାର୍ଦ୍ଦି ଆଜି ମନୁଷ୍ୟ ମନୁଷ୍ୟ ଭିତରେ ସହସ୍ର ଅଲଂଘ୍ୟ ପାଚେରୀର କାମ କରୁଅଛି ।

(ଗ) ସମାଜ ବ୍ୟକ୍ତିର ସମଷ୍ଟି ମାତ୍ର; ତେଣୁ ଦାୟିତ୍ୱ ପ୍ରତ୍ୟେକ ବ୍ୟକ୍ତିର ।

୪ । ନିମ୍ନଲିଖିତ ପଦମାନଙ୍କର ବିଶଦ ଅର୍ଥ ଲେଖି ପ୍ରତ୍ୟେକକୁ ବାକ୍ୟରେ ବ୍ୟବହାର କର—

ଅଗ୍ନିପରୀକ୍ଷା; ଅଗାନୁରୂପ, ଚନ୍ଦ୍ରାନାସ୍ତୂକ, ପୁରୁଷାନୁକ୍ରମେ, ଦେହାନ୍ତର, ଗଣାମାସ୍ତୁକାଳ ।

---

## ପୁରୁଷୋତ୍ତମ ଦେବ

[ କପିଳେନ୍ଦ୍ର ଦେବଙ୍କ ଅନ୍ତେ ପୁରୁଷୋତ୍ତମ ଓଡ଼ିଶାର ରାଜସିଂହାସନରେ ବସିଥିଲେ; କିନ୍ତୁ ତାଙ୍କ ରାଜତ୍ୱର ପ୍ରଥମ ଭାଗ ଅଶାନ୍ତିମୟ ହୋଇଥିଲା । ତାଙ୍କର ଅଠର ଭାଇ ଥିଲେ । ସେମାନେ ବିଦ୍ରୋହ କରି ଅନେକ ସମୟରେ ତାଙ୍କୁ ଅସ୍ଥିର କରି ପକାଉଥିଲେ । ପୁରୁଷୋତ୍ତମ କପଟୀ ଭାଇମାନଙ୍କୁ ଦମନ କରି ଉତ୍କଳ ସିଂହାସନକୁ ନିଷ୍କଣ୍ଟକ କରିଥିଲେ ଏବଂ କାଞ୍ଚି ଜୟ କରି ରାଜକନ୍ୟା ପଦ୍ମାବତୀଙ୍କୁ ବିବାହ କରିଥିଲେ, ଏହାହିଁ 'ପୁରୁଷୋତ୍ତମ ଦେବ' ନାଟକର କଥାବସ୍ତୁ ।

ପୁରୁଷୋତ୍ତମଙ୍କର ବିଦ୍ରୋହୀ ଭାଇମାନଙ୍କ ମଧ୍ୟରୁ ହମ୍ବୀର-ଦେବ ଅନ୍ୟତମ । ଥରେ ସେ ପୁରୁଷୋତ୍ତମଙ୍କୁ ବନ୍ଦୀ କରିଥିଲେ; କିନ୍ତୁ ପୁରୁଷୋତ୍ତମଙ୍କର ବିଶ୍ୱସ୍ତ ସେନାପତି ଅର୍ଜୁନ ସିଂହ ହଠାତ୍ ଉପସ୍ଥିତ ହୋଇ ହମ୍ବୀର ଓ ଅନ୍ୟ ଷଡ଼ଯନ୍ତ୍ରୀଙ୍କୁ ବନ୍ଦୀ କରିନେଲେ ଏବଂ ପୁରୁଷୋତ୍ତମଙ୍କୁ ଉଦ୍ଧାର କଲେ । ନିମ୍ନଲିଖିତ ଦୃଶ୍ୟରେ ଏହି ଘଟଣା ବର୍ଣ୍ଣିତ । ]

## ପ୍ରଥମ ଅଙ୍କ

### ଷଷ୍ଠ ଦୃଶ୍ୟ

**ସ୍ଥାନ—କୃଷ୍ଣାନଦୀକୂଳରେ ହମ୍ବୀର ଦେବଙ୍କ ଶିବିର; ପୁରୁଷୋତ୍ତମ ଦେବ ବନ୍ଦୀ—ପ୍ରହରୀ ଦଣ୍ଡାୟମାନ**

ରାଜା—ନା, ଏ ତ ଅନ୍ୟାୟ ।

ପ୍ରହରୀ—ଅନ୍ୟାୟ କଣ, ମହାରାଜ ?

ରାଜା—ଅନ୍ୟାୟ ନୁହେଁ, ପ୍ରହରୀ ? ଘୋର ଅନ୍ୟାୟ ।

ପ୍ରହରୀ—ଅନ୍ୟାୟ ତ ମୋର, ମହାରାଜାଙ୍କର କଣ ଅଛି ?

ରାଜା—ତୁମ୍ଭର ଅନ୍ୟାୟରେ ମୋର ନିଶ୍ଚିତ ଏକ ଅନ୍ୟାୟ, ପୁଣି ଅଧିକ ଏକ ଅନ୍ୟାୟ—ମୋର ଏପରି ଉପାୟରେ ପଳାୟନ । ପ୍ରହରୀ, ତୁମ୍ଭର ଏ ଦୟା ନିମନ୍ତେ ମୁଁ କୃତଜ୍ଞ । ମୋର ଜୀବନରକ୍ଷା ପାଇଁ ତୁମ୍ଭେ ନିଜର ଜୀବନ ଦେବାକୁ ପ୍ରସ୍ତୁତ ଅଛ । ଓଡ଼ିଆ ଏହା ପାରେ; କିନ୍ତୁ ଯେଉଁ ଓଡ଼ିଆର ପ୍ରାଣ ଏ ମହତ୍ ତ୍ୟାଗରେ ଗଠିତ, ସେ ପୁଣି କିପରି ଏଡ଼େ ନୀଚ, କାପୁରୁଷ ହେବ, ପ୍ରହରୀ, କେବଳ ପ୍ରାଣଲୋଭରେ, ଗୋପନରେ ଶତ୍ରୁର କାରାଗାରରୁ ପଳାୟନ କରିବ ? ନା, ତା ହେବ ନାହିଁ । କିନ୍ତୁ ଏ ଦୁର୍ଦ୍ଦିନରେ ସକଳ ଦୁଃଖ ଶୋକ ମଧ୍ୟରେ ମୋ ପ୍ରାଣରେ ଏକ ଅପୂର୍ବ ଆହ୍ଲାଦ ହେଉଅଛି, ପ୍ରହରୀ, ଯେ ଏ ଜାତି ଏଡ଼େ ପତିତ ହେଲେ ମଧ୍ୟ ଏପରି ମହତ୍ । ବୀରତ୍ୱ, ସାହସ, ଶକ୍ତି ରାଜପ୍ରାସାଦରୁ, ଉଚ୍ଚ ପାଷାଣସୌଧମଧ୍ୟରୁ ବିଲୁପ୍ତ ହୋଇଥିଲେ ମଧ୍ୟ କୁଟୀରେ କୁଟୀରେ ତାହାର ପୁଣ୍ୟ ସୌରଭ ବିକଶି ଉଠୁଛି । ଏ ଦେଶରେ ପ୍ରକୃତ ପୁରୁଷୋତ୍ତମ ଦେବ କି

ବିକ୍ରମ ଦେବ ନଥିଲେ ମଧ ଗୋବିନ୍ଦ ପ୍ରଧାନ ଅଛନ୍ତି । ବିକ୍ରମ ମତେ ହତ୍ୟା କରିବେ—ମୋର ଅଣୁମାତ୍ର କ୍ଷୋଭ ନାହିଁ । ମୁଁ ପ୍ରସ୍ତୁତ ଅଛି । ତୁମ୍ଭେ, ପ୍ରହରୀ, ମରିବାକୁ ଜାଣ ; ଆଜ ଯେ ମୁଁ ବିଶାଳ ଓଡ଼ିଶା ରାଜ୍ୟର ଶାସକ, ପାଳକ, ନିୟାମକ ବୋଲି ଆପଣାକୁ ପରିଚିତ କରିବାର ଉପଯୁକ୍ତ ମଣେ, ସେହି ମୁଁ, ମୃତ୍ୟୁକୁ ଏତେ ଭୟ କରିବି ? ନା, ତାହା ହେବ ନାହିଁ, ପ୍ରହରୀ । ତୁମ୍ଭର ଜୀବନ ଅମୂଲ୍ୟ, ଦୁର୍ଲ୍ଲଭ । ତୁମ୍ଭେ ବଞ୍ଚିଥାଅ । ମରିବାର ପାତ୍ର ମୁଁ, ମତେ । ତୁମ୍ଭର ଦୟା ନିମନ୍ତେ ମୋର ପ୍ରତିଦାନ ଦେବାର କିଛି ନାହିଁ, ପ୍ରହରୀ । ଅଛି କେବଳ ଏ ହୃଦୟ ।

ପ୍ରହରୀ – ମହାରାଜ ।

ରାଜା – ଦୁଃଖ ନାହିଁ, ପ୍ରହରୀ !

ପ୍ରହରୀ—ମହାରାଜ, କ୍ଷୁଧା ହେଉଥିବ, କିଛି ସାମାନ୍ୟ ଖାଦ୍ୟ ଅଛି, ଅନୁମତି ହେଲେ ଦିଅନ୍ତି ।

ରାଜା—ଯେତେବେଳେ ମୋର ବନ୍ଦକର୍ତ୍ତା, ମୋର ଏ ଦେହର ଖଣ୍ଡର ଅଧିକାରୀ, ପାନାହାର ନିଷେଧ କରିଛନ୍ତି—ଆଉ କି କ୍ଷୁଧା ? ଖାଇବାର ଇଚ୍ଛା ନାହିଁ, ପ୍ରହରୀ ।

ପ୍ରହରୀ—ନାହିଁ ?

ରାଜା—ନାହିଁ, କିଛି ବିଗୁଡ଼ିବ ନାହିଁ, ପ୍ରହରୀ, ତୁମ୍ଭର ଦୟା ଅସୀମ, ମୁଁ ତାର ପାତ୍ର ନୁହେଁ ।

ପ୍ରହରୀ—ମହାରାଜ ।

ରାଜା – ପ୍ରହରୀ,—ପ୍ରହରୀ, ତୁମ୍ଭେ ନିଜ ସ୍ଥାନକୁ ଯାଅ ।

( ପ୍ରହରୀର ଦୂରକୁ ପ୍ରସ୍ଥାନ )

ନେପଥ୍ୟେ—କେବଳ ବଧ ନୁହେଁ, ବର୍ବରଙ୍କୁ ସମୁଚିତ ଶିକ୍ଷା
ଦେବା ପ୍ରୟୋଜନ ।

ନେପଥ୍ୟେ—ମହାରାଜାଙ୍କର ଜୟ ।

( ବିକ୍ରମ ଦେବ ଓ ସୈନିକଗଣଙ୍କ ପ୍ରବେଶ )



[ ପୁରୁଷୋତ୍ତମ ଦେବ ]

ବିକ୍ରମ—ମହାରାଜାଙ୍କର ସମସ୍ତ କୁଶଳ ?

ରାଜା—ଅକୁଶଳ କିଛି ନୁହେଁ ବିକ୍ରମଦେବ !

ବିକ୍ରମ—ଯୁଦ୍ଧ ଶେଷ ହେଲା ?

ରାଜା—ଶେଷ ? ହେଲା ତେବେ, ବିକ୍ରମ !

ବିକ୍ରମ—କିପରି ?

ରାଜା—ଯେପରି ଦେଖୁଛ, ବିକ୍ରମ ଦେବ !

ବିକ୍ରମ—ଦେଖୁଛି ତୁମେ ମହାରାଜା ପୁରୁଷୋତ୍ତମ ଦେବ, କିନ୍ତୁ ଦୁଃଖ ହେଉଛି—ବସିବାର ସିଂହାସନ ନାହିଁ, ପିନ୍ଧିବାର ମୁକୁଟ ନାହିଁ ।

ରାଜା—ସବୁ ଅଛି, ବିକ୍ରମ ଦେବ । ବର୍ତ୍ତମାନ ମୁଁ ଯେଉଁ ସିଂହାସନରେ ଆସୀନ, ଯେଉଁ ରାଜମୁକୁଟରେ ମୋର ମସ୍ତକ ମଣ୍ଡିତ, ତାହା ଅପହରଣ କରିବାର କ୍ଷମତା ତୁମର ନାହିଁ, ବନ୍ଦକର୍ତ୍ତା ।

ବିକ୍ରମ—ଓଡ଼ିଶାର ମହାରାଜା ତ ବେଶ୍ କବି ଥିଲେ ବା ନୈୟାୟିକ ଥିଲେ । ତା ନ ହେଲେ କି ଏପରି ?—ପ୍ରହରୀ; ମହାରାଜାଙ୍କୁ ସିଂହାସନ ଦିଅ, ମୁକୁଟ ଦିଅ ।

ପ୍ରହରୀ—ବିକ୍ରମ ଦେବ ।

ବିକ୍ରମ—କି ଅସ୍ପର୍ଦ୍ଧା, ପ୍ରହରୀ !

ପ୍ରହରୀ—ଅସ୍ପର୍ଦ୍ଧା ନୁହେଁ, ବିକ୍ରମ ଦେବ ! ଦେଖ, ବିବେଚନା କରି କାର୍ଯ୍ୟ କର; ନଚେତ୍ ଅମଙ୍ଗଳ ଘଟିବ ।

ବିକ୍ରମ - ବିକ୍ରମ ଦେବ ତେବେ ତାଙ୍କର ପ୍ରହରୀଠାରୁ କର୍ତ୍ତବ୍ୟ ଶିକ୍ଷା କରିବେ ?

ପ୍ରହରୀ—କରିପାରନ୍ତି ।

ବିକ୍ରମ—କରିପାରନ୍ତି ?

ପ୍ରହରୀ—ହଁ, କରିପାରନ୍ତି । ଏଥିରେ ଏତେ ଅସମ୍ଭବ କ'ଣ, ବିକ୍ରମ ଦେବ ?

ବିକ୍ରମ—ଅସମ୍ଭବ କ'ଣ ? ସୈନିକଗଣ, ପ୍ରହରୀକୁ ବନ୍ଦୀ କର । ଆଜି ଅଳ୍ପ ସୂର୍ଯ୍ୟାସ୍ତ ପୂର୍ବରୁ ତାର ଶିରଶ୍ଛେଦନ କରି ମୋତେ ଦେଖାଅ । ସାମାନ୍ୟ ପ୍ରହରୀ; ତାର ପୁଣି ଏତେ ଅସ୍ପର୍ଦ୍ଧା !

ପ୍ରହରୀ—ସେ ଭୟ ଗୋବିନ୍ଦ ପ୍ରଧାନର ନାହିଁ, ବିକ୍ରମ ଦେବ ! ଶିରଚ୍ଛେଦ ! ସୂର୍ଯ୍ୟାସ୍ତ ପୂର୍ବରୁ କାହିଁକି ? ଏ ସାମାନ୍ୟ ପ୍ରହରୀର ଶିରରେ ଯଦି ଏତେ ମୂଲ୍ୟ ଥାଏ, ତେବେ ଏହିକ୍ଷଣି ।

(ଶିରଚ୍ଛେଦ କରିବାକୁ ଉଦ୍ୟତ ହେବାରୁ
ସୈନିକଗଣ ବାଧା ଦେଲେ)

ବିକ୍ରମ—ପ୍ରହରୀର ସାହସ ତ ବେଶ୍ ! ଯାଅ ସୈନିକଗଣ, ଏହାକୁ ନେଇଯାଅ । କିନ୍ତୁ ଦେଖ, ସୂର୍ଯ୍ୟାସ୍ତ ପୂର୍ବରୁ ଏହାର ଛିନ୍ନଶିର ଯେପରି ମୁଁ ପାଏ । (ସୈନିକଗଣ ପ୍ରହରୀକୁ ନେଇ ପ୍ରସ୍ଥାନ) କିଏ ପୁରୁଷୋତ୍ତମ ! ଆଜି କିଏ ଉତ୍କଳର ରାଜା ?—ରାଜପୁତ୍ର ବିକ୍ରମ ଦେବ, ନା ରାଜଦ୍ରୋହୀ ପୁରୁଷୋତ୍ତମ ? କିଏ ରାଜା ?

ରାଜା—ଭୃତ୍ୟପ୍ରତି ଅତ୍ୟାଚାର, ତହିଁରେ ପୁଣି ବନ୍ଦୀପ୍ରତି ତିରସ୍କାର ! ଏ କଳଙ୍କ, ବିକ୍ରମ ତୁମର ନୁହେଁ—ଏ ମୋର କଳଙ୍କ, ପୁଣ୍ୟ ଜନ୍ମଭୂମିର କଳଙ୍କ; ଅନଙ୍ଗ, ନରସିଂହ, କପିଳେନ୍ଦ୍ରଙ୍କ ଉନ୍ନତ କୀର୍ତ୍ତିରେ କଳଙ୍କ, କ୍ଷତ୍ରିୟର ଉଦାର ଉଜ୍ଜ୍ୱଳ ଧର୍ମରେ କଳଙ୍କ !

ବିକ୍ରମ-ଦୁଃଖ ଲାଗୁଛି, ପୁରୁଷୋତ୍ତମ ? ନା, ପୁରୁଷୋତ୍ତମ ମହାରାଜ !

ରାଜା—ନିଶ୍ଚୟ, ପୁରୁଷୋତ୍ତମ ମହାରାଜା । ସେ ଆଜି ବନ୍ଦୀ ବୋଲି ଯେ ମହାରାଜା ନୁହନ୍ତି—ତାହା ନୁହେଁ । ନିଅ ତୁମର ବନ୍ଧନ, ବିକ୍ରମ ଦେବ ! (ବନ୍ଧନ ଛିନ୍ନକରି) ପୁରୁଷୋତ୍ତମ ବିକ୍ରମହସ୍ତରେ ବନ୍ଦୀ ହେବାର ପ୍ରାଣୀ ନୁହେଁ ।

ବିକ୍ରମ—ଏ ବର୍ବରକୁ ଏହି ମୁହୂର୍ତ୍ତରେ ହତ୍ୟାକର ସୈନିକଗଣ !

(ସୈନିକଗଣ ପଶ୍ଚାତ୍‌ପଦ)

ବିକ୍ରମ ଦେବଙ୍କର ଆଦେଶ, ହତ୍ୟାକର ।

ସୈନିକ ମହାରାଜ ! (ପଶ୍ଚାତ୍ପଦ)

ବିକ୍ରମ—ହତ୍ୟା କର, ମହାରାଜା ବିକ୍ରମ ଦେବଙ୍କ **ଆଜ୍ଞା** ।

ସୈନିକ—ମହାରାଜ ! **(ପଶ୍ଚାତ୍ପଦ)**

ବିକ୍ରମ—ଅନନ୍ତ ରାଉତ, ଲୋକନାଥ ରଣସିଂହ, ମୁକୁନ୍ଦ ବଣ୍ଠାଳ—

(ନେପଥ୍ୟେ ରଣ ବାଦ୍ୟର ଶବ୍ଦ)

ଏ କଁଣ ? କି ଶବ୍ଦ ?

ସୈନିକ—ଶତ୍ରୁ ମହାରାଜ, ଶତ୍ରୁ !

ବିକ୍ରମ—ଶତ୍ରୁ ? ଆଗେ ହତ୍ୟାକର ।

(ଅର୍ଜ୍ଜୁନ ସିଂହର ପ୍ରବେଶ)

ଅର୍ଜ୍ଜୁନ—ହତ୍ୟା, କାହାର ହତ୍ୟା, ବିକ୍ରମ ଦେବ ?

ବିକ୍ରମ—ହତ୍ୟା, ବୃଦ୍ଧ ଅର୍ଜ୍ଜୁନ ସିଂହ ! ତୁମ୍ଭେ ଏଠାରେ ? କି ଉଦ୍ଦେଶ୍ୟ ?

ଅର୍ଜ୍ଜୁନ—ଆସିବାର ଉଦ୍ଦେଶ୍ୟ ?—କି ଉପାୟ, ବିକ୍ରମ ଦେବ, ନରସିଂହ ଦେବ, ଗୋପାଳକିଶୋର ଦେବ, ତୁମ୍ଭେମାନେ ବର୍ତ୍ତମାନ ବନ୍ଦୀ ।

ନରସିଂହ—ବନ୍ଦୀ ।

ଗୋପାଳ—ବନ୍ଦୀ !

ବିକ୍ରମ—ବନ୍ଦୀ ।

ଅର୍ଜ୍ଜୁନ—ବନ୍ଦୀ । ସୈନିକଗଣ, ଏମାନଙ୍କୁ ଘେନିଯାଅ ।

(କେତେକ ସୈନିକ ବନ୍ଦୀମାନଙ୍କୁ ଘେନି ପ୍ରସ୍ଥାନ)

ମହାରାଜାଙ୍କର ଜୟ !

ରାଜା—ସୈନିକବର ଅର୍ଜ୍ଜୁନ ସିଂହ ! ବଡ଼ ଶୁଭ ମୁହୂର୍ତ୍ତରେ ଦେଖା ସକ୍ଷାତ । ସେ ବଦାୟବେଳର କଥା ଭାଳୁଥାଏଁ । ତୁମ୍ଭେ

ଗ୍ଭଲିଗଲ; ସେତକ ମାତ୍ର ଦେଖା । ଭ୍ରବଥିଲି ସେତକରେ ଯୁଦ୍ଧ ଶେଷ ହେଲା; ଓଡ଼ିଶାର ଗ୍ରଜସିଂହାସନକୁ କଳଙ୍କିତ କରି ମୁଁ ଏହିଠାରେ ବିଦାୟ ନେବି । କିନ୍ତୁ ଏ ଯୋଗର ବିଧିର ଏକ ଅଦ୍ଭୁତ ନିର୍ଦ୍ଦେଶ, ଭାଗ୍ୟର ଏକ ବିଚିତ୍ର କ୍ରୀଡ଼ା । ବଡ଼ ମଧୁର ଏ ସାକ୍ଷାତ ପୁନର୍ବାର । ଯୁଦ୍ଧର ସମ୍ବାଦ କଣ କହିପାର, ଅର୍ଜ୍ଜୁନ ସିଂହ ?

ଅର୍ଜ୍ଜୁନ—ସମ୍ବାଦ ସମସ୍ତ ମଙ୍ଗଳ, ମହାରାଜ ! ମୁଁ ସେଠାରେ ଶତ୍ରୁ ଜଣକୁ ବନ୍ଦୀ କରି ଆସିଅଛି । ଏମାନେ ତିନିଜଣ ଏଠାରେ ବନ୍ଦୀ । ରାମଚନ୍ଦ୍ର ଦେବ କ୍ଷମା-ଭିକ୍ଷା କରୁଅଛନ୍ତି । ବାକି ପଦ୍ମନାଭଦେବ, ବ୍ରଜକିଶୋରଦେବ ଏପର୍ଯ୍ୟନ୍ତ ନିରୁଦ୍ଦିଷ୍ଟ । ତାଙ୍କର ସନ୍ଧାନ ନେବାକୁ ହେବ । ଅସନ୍ତୁ, ମହାରାଜ ! ଯୁଦ୍ଧ ଆଜ ଶେଷ । ବର୍ତ୍ତମାନ ତୋଫାନ ସ୍ଥିର, ଆକାଶ ନିର୍ମଳ । ସୌଭାଗ୍ୟ ରବି ପୁନର୍ବାର ଓଡ଼ିଶାର ବିଶାଳ ଆକାଶରେ ଉଜ୍ଜ୍ୱଳ କିରଣ ବର୍ଷଣ କରିବ । ଆଉ ଚିନ୍ତା ନାହିଁ, ମହାରାଜ । ବିଜୟ ଧର୍ମର, ମହତ୍ତ୍ୱର, ଉଦାର ଗ୍ରଜନୀତିର । ସୈନ୍ୟଗଣ, ଜୟଭେରୀ ବଜାଅ ।

ସୈନିକଗଣ—ଜୟ ମହାରାଜାଙ୍କର ଜୟ !

ରାଜା—ଏ ଜୟ, ଅର୍ଜ୍ଜୁନ ସିଂହ, ପୁରୁଷୋତ୍ତମ ଦେବର ନୁହେଁ । ଏ ଜୟ ତୁମ୍ଭର, ବୃଦ୍ଧ ସେନାପତି । ଆମ୍ଭେମାନେ ବର୍ତ୍ତମାନ ଶିବିରକୁ ଫେରିଯିବା । ଆସ ସୈନିକଗଣ ।

ସୈନିକଗଣ—ରଞ୍ଜିତ ଅସିଧାରେ, ଶତ୍ରୁରକ୍ତଧାରେ—
ଲେଖ ହେ ଆଜ ବିଜୟବିଭବ ଜନ୍ମଭୂମି ଭାଲେ । ଘୋଷ ।
ନିର୍ମଳ ଅଜି ଧ୍ୱାନ୍ତ ଗଗନ, ବର୍ଷେ ତପନ ପୁଣ୍ୟ କିରଣ

ଶତ୍ରୁ ଅଙ୍କ ଦଳିତ ଚରଣେ, ଝଲ୍ସେ ଏ କରବାଳେ । ୧ ।
ଭଗ୍ନ କରନ୍ତୁ ବୈରି-ଗର୍ବ, ବୈରି-ଦମ୍ଭ କରନ୍ତୁ ଖର୍ବ,
ମୃତ୍ୟୁ-ମନ୍ତ୍ର ଲେଖି ଅସିକ୍ତୁ ଶତ୍ରୁର ଶତ ଭାଲେ । ୨ ।
ମାତ ଭଉ ହେ ପୁଣ୍ୟ କରମେ, ବିଶ୍ୱାସ ରଖି ବୀର ଧର୍ମେ,
ପୁଣ୍ୟ କର୍ମେ ବୀର ଶକ୍ତି ଦେଖୁ ଏ ଜଗତ ବାରେ । ୩ ।
ଇତିହାସ ଯାର ଭୀମ ଲଳିତ—ସନ୍ତତି କଲେ ପୂତ ମହତ;
ଭୂଷିତ କର ସେ ଜନନୀ-ତନୁ କୀର୍ତ୍ତି-କୁସୁମମାଳେ । ୪ ।
ଜୀବନ ପଣ କର ରେ ଭାଇ; ଦେଶ କରମେ ପ୍ରାଣ ଦେଇ,
ବୀର ଧର୍ମେ ପାଇବ ଫଳ ଜୀବନ ପର ପାରେ । ୫ । (ପ୍ରସ୍ଥାନ)

## ପ୍ରଶ୍ନ

୧ । ପୁରୁଷୋତ୍ତମ କାହିଁକି ବନ୍ଦଶାଳାରୁ ପଳାୟନ କରିବାକୁ ଅସ୍ୱୀକୃତ ହେଲେ ?

୨ । କିପରିଭାବରେ ବିକ୍ରମଙ୍କ ଭାଗ୍ୟର ବିପର୍ଯ୍ୟୟ ଘଟିଲା ?

୩ । ସରଳ ଭାଷାରେ ବୁଝାଇଦିଅ—

(କ) ବିଜୟ ଧର୍ମର, ମହତ୍ତ୍ୱର, ଉଦାର ରାଜନୀତିର ।

(ଖ) ବୀରତ୍ୱ, ସାହସ, ଶକ୍ତି...ବିକଶି ଉଠୁଅଛି ।

(ଗ) ମୃତ୍ୟୁ-ମନ୍ତ୍ର ଲେଖି ଅସିକ୍ତୁ ଶତ୍ରୁର ଶତ ଭାଲେ ।

୪ । ସନ୍ଧି ବିଚ୍ଛେଦ କର—ଶିରଶ୍ଛେଦ, ନାତ୍ୟୁଦ୍ଧିଷ୍ଟ, ଉଜ୍ଜ୍ୱଳ, ତିରସ୍କାର, ଦୁର୍ଦ୍ଦିନ ।

୫ । ଯେ ନ୍ୟାୟ ଜାଣନ୍ତି ସେ ନୈୟାୟିକ । ସେହିପରି ଯେଉଁମାନେ ନିମ୍ନଲିଖିତ ବିଷୟମାନ ଜାଣନ୍ତି, ତାଙ୍କୁ କଅଣ କୁହାଯିବ ? ବ୍ୟାକରଣ, ବିଜ୍ଞାନ, ଦର୍ଶନ, ଇତିହାସ, ତର୍କ, ସାହିତ୍ୟ ।

---

